ଓଡ଼ିଶା ମାଧ୍ୟମିକ ଶିକ୍ଷାବୋର୍ଡ ଦ୍ୱାରା ୬।୨୨।୧୨।୭୭ର
ନୋଟିସରେ ଷଷ୍ଠ ଶ୍ରେଣୀ ପାଇଁ ପାଠ୍ୟପୁସ୍ତକ ରୂପେ ନିର୍ବାଚିତ

---

# ସରଳ
# ବିଜ୍ଞାନ ପ୍ରବେଶ

## ପ୍ରଥମ ଭାଗ

( ଷଷ୍ଠ ଶ୍ରେଣୀ ନିମନ୍ତେ )


ଲେଖକ

**ଅଧ୍ୟାପକ ଡକ୍ଟର ବସନ୍ତକୁମାର ବେହୁରା,**

ଏମ୍. ଏସ୍-ସି., ପି. ଏଚ୍. ଡ଼ି. (ଏଡ଼ିନ୍‌ବରା)

ଏଫ୍. ଆର୍. ଇ-ଏସ୍. (ଲଣ୍ଡନ), ଏମ୍. ଆଇ. ବାୟୁଲ (ଲଣ୍ଡନ)

ଏଫ୍. ଏ. ଜେଡ୍., ଏଫ୍. ଇ. ଏସ୍. ଆଇ.

ରେଭେନ୍‌ସା କଲେଜ, କଟକ



**କଟକ ପବ୍ଲିଶିଂ ହାଉସ୍**

**କଟକ**

ପ୍ରକାଶକ

ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି

କଟକ ପବ୍ଲିଶିଂ ହାଉସ୍

ବାଲୁବଜାର, କଟକ—୨

ପୁନର୍ମୁଦ୍ରଣ

୧୯୬୭

ମୂଲ୍ୟ—ନବେ ପଇସା

ମୁଦ୍ରାକର

ଶ୍ରୀ କେଶବ ଚରଣ ରଥ

ପ୍ରକାଶ ପ୍ରିଣ୍ଟର୍ସ,

କଟକ-୧

# ସୂଚୀପତ୍ର

# ସରଳ ବିଜ୍ଞାନ ପ୍ରବେଶ

## ପ୍ରଥମ ଭାଗ

---

## ପ୍ରଥମ ଅଧ୍ୟାୟ

## ଜୀବଜନ୍ତୁ ପର୍ଯ୍ୟବେକ୍ଷଣ

### ପ୍ରାଣୀ—ରାଜ୍ୟ

ଘରେ, ବାହାରେ ଆମେ ନାନାଜାତି ଜୀବଜନ୍ତୁ ଦେଖୁ । ମାଟି ଉପରେ, ମାଟି ଭିତରେ, ପାଣିରେ, ଗଛଲତାରେ ସବୁଠାରେ ସାନ ବଡ଼ ଜୀବ ବାସ କରନ୍ତି । କେବଳ ବାୟୁରେ କୌଣସି ପ୍ରାଣୀ ବାସ କରିବାର ଦେଖୁନାହିଁ । ମାତ୍ର ଆକାଶରେ ପକ୍ଷୀମାନଙ୍କର ଅସ୍ଥାୟୀ ଘର । ତା' ଛଡ଼ା ବାୟୁରେ ନାନାଜାତି ଅତି କ୍ଷୁଦ୍ର ଅଦୃଶ୍ୟ ପ୍ରାଣୀ ଉଡ଼ି ବୁଲୁଥାନ୍ତି । ସେମାନଙ୍କୁ ଦେଖିବାକୁ ହେଲେ ଅଣୁବୀକ୍ଷଣ ଯନ୍ତ୍ର ଆବଶ୍ୟକ ହୁଏ । ଜଳରେ, ସ୍ଥଳରେ, ଗଛଲତାରେ ମଧ୍ୟ ଅନେକ ପ୍ରାଣୀ ବାସ କରନ୍ତି, ଯେଉଁମାନଙ୍କୁ ଖାଲି ଆଖିରେ ଦେଖି ହୁଏ ନାହିଁ । ବୈଜ୍ଞାନିକମାନେ ହିସାବ କରିଅଛନ୍ତି ଯେ ପୃଥିବୀରେ ସାଢ଼େ ଏଗାର ଲକ୍ଷରୁ ଅଧିକ ଭିନ୍ନ ପ୍ରକାରର ଜୀବଜନ୍ତୁ ଅଛନ୍ତି । ଏ ସମସ୍ତଙ୍କୁ ସାଧାରଣତଃ ଦୁଇଟି ଭାଗରେ ବିଭକ୍ତ କରାଯାଇଥାଏ, ଯଥାଃ—ମେରୁଦଣ୍ଡୀ ଓ

ଅମେରୁଦଣ୍ଡୀ । ଯେଉଁମାନଙ୍କର ମେରୁହାଡ଼ ଅଛି ସେମାନଙ୍କୁ ମେରୁଦଣ୍ଡୀ ପ୍ରାଣୀ ବୋଲାଯାଏ । ମାଛ, ବେଙ୍ଗ, ଝିଟିପିଟି, କଇଁଛ, ସାପ, ପକ୍ଷୀ, ଘୋଡ଼ା, ଗୋରୁ, ବାଦୁଡ଼ି, ମଣିଷ ଆଦି ପ୍ରାଣୀଙ୍କର ମେରୁଦଣ୍ଡ ଅଛି । ତେଣୁ ଏମାନେ ମେରୁଦଣ୍ଡୀ । ଯେଉଁ ପ୍ରାଣୀମାନଙ୍କର ମେରୁହାଡ଼ ନାହିଁ ସେମାନଙ୍କୁ ଅମେରୁଦଣ୍ଡୀ ପ୍ରାଣୀ କୁହାଯାଏ । ଜିଆ, ଅସରପା, ଚିଙ୍ଗୁଡ଼ି, କଙ୍କଡ଼ା, ବୁଢ଼ୀଆଣୀ, ଗେଣ୍ଡା, ଶଙ୍ଖ ଆଦି ପ୍ରାଣୀଙ୍କର ମେରୁଦଣ୍ଡ ନାହିଁ । ତେଣୁ ସେମାନେ ଅମେରୁଦଣ୍ଡୀ ।

ପୃଥିବୀର ବଡ଼ବଡ଼ ସ୍ଥାନରେ ପ୍ରାୟ କୋଡ଼ିଏ ହଜାର ଜାତିର ମାଛ ଅଛନ୍ତି । ସେଥିରୁ କେତେକ ରହନ୍ତି ଲୁଣିପାଣିରେ, ଯଥା— ସମୁଦ୍ର ଓ ହ୍ରଦରେ । ଆଉ କେତେକ ରହନ୍ତି ମଧୁର ପାଣିରେ, ଯଥା—ନଦୀ, ପୋଖରୀ, ନାଳରେ । ଇଲିଶି ପରି କେତେକ ମାଛ ଅଛନ୍ତି, ସେମାନେ ସମୁଦ୍ରରେ ଓ ନଦୀରେ ଉଭୟ ସ୍ଥାନରେ ବାସ କରନ୍ତି । ମାଛ ଆମର ଏକ ପ୍ରିୟ ଖାଦ୍ୟ । ଆମ ଓଡ଼ିଶାରେ ରୋହି, ଭାକୁର, ଚଉଳ, ମାଗୁର, ଶେଉଳ, ଶିଙ୍ଗି, କଉ, ଗଡ଼ିଶା, ଇଲିଶି, ସୁଙ୍ଗ ଆଦି ନାନା ଜାତି ମାଛ ମିଳନ୍ତି ।

## (କ) ମାଛ

ମାଛ ଗୋଟିଏ ମେରୁଦଣ୍ଡୀ ପ୍ରାଣୀ । ଏହା ଜଳରେ ବାସକରେ । ମାଛର ଶରୀର ପ୍ରଧାନତଃ ଦୁଇ ଭାଗରେ ବିଭକ୍ତ, ଯଥା—ମୁଣ୍ଡ ଓ ଗଣ୍ଡି । ଯେ କୌଣସି ମାଛକୁ ପରୀକ୍ଷା କଲେ ଦେଖିବ ଯେ ତାହାର ଆକାର ଡେଙ୍ଗା, ମଝି ଅଂଶଟି ମୋଟା ଓ ଦୁଇଆଡ଼କୁ ସରୁ । ଦେହର ଏପରି ଗଢ଼ଣ ଯୋଗୁଁ ମାଛ ସହଜରେ ଓ ବେଗରେ ସହଜ ପାଣି କାଟି ଗତି କରିପାରେ ।

ମାଛର ମୁଣ୍ଡରେ ଦୁଇଟି ବଡ଼ ବଡ଼ ଆଖି ଦେଖିବାକୁ ମିଳେ । ମାଛମାନଙ୍କର ଆଖି ଦେହ ତୁଳନାରେ ବଡ଼ । ମାଛ ଦେହରେ ଆଖି ଦୁଇଟି ମୁଣ୍ଡର ଦୁଇପାଖରେ ବା ଉପରଆଡ଼କୁ ପାଖ ପାଖ ହୋଇ ରହିଥାଏ । ଆମପରି ମାଛର ଆଖିପତା ନାହିଁ ।



ମାଛ

୧—ଆଖି, ୨—ନାକରନ୍ଧ୍ର, ୩—ମାଛ ମାଛି, ୪—ଗାଲସୀ, ୫—ଗଳର ଡେଣା, ୬—ପେଟର ଡେଣା, ୭—ତଳପେଟର ଡେଣା, ୮—ଲାଞ୍ଜର ଡେଣା, ୯—ପିଠି ଉପର ଡେଣା ।

ମାଛର ଆଖି ଉପରେ ଗୋଟିଏ ସ୍ୱଚ୍ଛ ପରଦା ଢାଙ୍କୁଣୀପରି ରହିଥାଏ । ଏହାକୁ "ଚକ୍ଷୁ-ଝିଲ୍ଲୀ" ବା କୃତ୍ରିମ ଆଖିପତା କହନ୍ତି । ଏଥିପାଇଁ ପାଣି ମାଛର ଆଖି ଭିତରେ ପଶିପାରେ ନାହିଁ ଓ ସେ ସବୁବେଳେ ଦେଖିପାରେ ।

ମାଛ ମୁଣ୍ଡରେ ଆଖି ଆଗକୁ ଦୁଇଟି ଗର୍ତ୍ତ ଅଛି । ଏଗୁଡ଼ିକ ନାକରନ୍ଧ୍ର । ଆମ ନାକପୁଡ଼ାର ବାଟ ପରି ଭିତର ସହିତ ସଂଯୁକ୍ତ ବୋଲି ଆମେ ନାକବାଟେ ପବନ ନେଇପାରୁ ଓ ଛାଡ଼ିପାରୁ

ମାତ୍ର ମାଛମାନେ ନାକରନ୍ଧ୍ର ବାଟେ ଭିତରକୁ ପବନ ନେଇ ପାରନ୍ତି ନାହିଁ । କାରଣ, ସେମାନଙ୍କର ପାଟି ସହିତ ନାକରନ୍ଧ୍ରର ସଂଯୋଗ ନାହିଁ । ନାକ କେବଳ ଆଘ୍ରାଣ ପାଇଁ ବ୍ୟବହୃତ ହୁଏ ।

ଆମପରି ମାଛମାନଙ୍କର ବାହାର କାନ ନାହିଁ । କାନ ବାହାରେ ଥିଲେ ସେଥିରେ ପାଣି ପଶିଯା'ନ୍ତା । 'ମାଛର ଶୁଣିବା ଯନ୍ତ୍ର ତା ମୁଣ୍ଡ ଭିତରେ ଥାଏ ।

ମାଛର ପାଟିରେ ଦାନ୍ତ ଥାଏ । ମାତ୍ର ମାଛ ଚୋବାଇ ଖାଏ ନାହିଁ, ଗିଳେ । ଖାଇବା ପଦାର୍ଥ ପାଟିରୁ ଖସି ନ ଯିବା ପାଇଁ ଦାନ୍ତ ସାହାଯ୍ୟ କରେ ।

**ଗାଲସି**—ସବୁ ଜୀବନ୍ତ ପ୍ରାଣୀ ପ୍ରଶ୍ୱାସ ନିଅନ୍ତି, ନିଶ୍ୱାସ ଛାଡନ୍ତି । ଏଥିପାଇଁ ବାୟୁ ଆବଶ୍ୟକ । ବାୟୁରେ ଅମ୍ଳଜାନ ଥାଏ ।



ମାଛର ମୁଣ୍ଡ—ଫୁଲକା ଦେଖାଇବା ପାଇଁ ଗାଲସିର ଢାଙ୍କୁଣୀ କାଟି ବାହାର କରି ଦିଆଯାଇଅଛି ।

ପ୍ରଶ୍ୱାସରେ ବାୟୁର ଅମ୍ଳଜାନ ଦେହଭିତରକୁ ଯାଏ ଓ ଅଙ୍ଗାରକାମ୍ଳ ବାଷ୍ପ ନିଶ୍ୱାସରେ ପଦାକୁ ବାହାରି ଆସେ । ମାଛ ତ ପାଣି ଭିତରେ ରହେ, ସେ ତେବେ କିପରି ବାୟୁ ଗ୍ରହଣ କରେ ? ବାୟୁର ଅମ୍ଳଜାନ

ଗ୍ରହଣ କରିବାପାଇଁ ଆମର ଫୁସ୍‌ଫୁସ୍ ଅଛି; କିନ୍ତୁ ମାଛର ତାହା ନାହିଁ । ପାଣିରେ ମିଶି ରହିଥିବା ବାୟୁରୁ ସେ ଅମ୍ଳଜାନ ଗ୍ରହଣ କରେ । ଏ ପ୍ରକାର ଶ୍ୱାସକ୍ରିୟା ପାଇଁ ଫୁସ୍‌ଫୁସ୍ ବଦଳରେ ମାଛର ମୁଣ୍ଡ ଦୁଇ ପାଖରେ ଫୁଲ୍‌କା ଅଛି । ଫୁଲ୍‌କା ଲାଲ୍ ଫୁଲ ପରି, ଛୁଆ ଛୁଆ ହୋଇଥାଏ ଓ ତା' ଉପରେ ଗାଲସୀ ଢାଙ୍କୁଣୀ ଥାଏ । ଫୁଲ୍‌କା ଦେହରେ ବହୁତ ରକ୍ତନଳୀ ଥିବାରୁ ତାହା ଲାଲ୍ । ଆମର ଫୁସ୍‌ଫୁସ୍




ମାଛର ଶ୍ୱାସକ୍ରିୟା

ମଧ୍ୟ ସେହି କାରଣରୁ ଲାଲ୍ । ମାଛବିକାଳୀମାନେ ଗରାଖକୁ ମାଛ ପଚ୍‌ ନ ନୁହେଁ, ତାହା ଦେଖାଇବା ପାଇଁ ମାଛର ଗାଲସୀ ଢାଙ୍କୁଣୀ

ଉଠାଇ ଫୁଲୁକାକୁ ଦେଖାଇଥାନ୍ତି । ଫୁଲୁକା ଯଦି ଲାଲ୍ ଟକ୍‌ଟକ୍ ଦେଖା ଯାଉଥାଏ, ତେବେ ତାହା ସଦ୍ୟ ଓ ଯଦି କଳାସିଆ ଲାଲ୍ ହୋଇଥାଏ ତେବେ ବାସି । ମାଛ ଅଳ୍ପ ସମୟ ପୂର୍ବରୁ ମରିଯାଇଥିଲେ ତା'ଦେହର ରକ୍ତ ଜମାଟ ବାନ୍ଧି ନ ଥିବାରୁ ଫୁଲୁକା ଲାଲ୍ ଦେଖାଯାଏ, ବେଶୀ ସମୟ ରହିଗଲେ ରକ୍ତ ଜମାଟ ବାନ୍ଧିଯାଏ ଓ ଫୁଲୁକା କଳାସିଆ ଦେଖାଯାଏ ।

ମାଛ ପାଣିରୁ ଅମ୍ଳଜାନ ନେବା ପାଇଁ ବହୁତ ପାଣି ତାର ଫୁଲୁକା ଉପରେ ଯିବା ଦରକାର ହୁଏ । ସେଥିପାଇଁ ମାଛ ପାଟି ବାଟେ ବହୁତ ପାଣି ପଶେ । ମାଛ ପହଁରୁଥିବାବେଳେ ଲକ୍ଷ୍ୟ କଲେ ଦେଖିବ ଯେ ମାଛ ଅନବରତ ପାଟି ମେଲ କରୁଛି ଓ ବୁଜୁଛି । ଏହାଦ୍ୱାରା ମାଛ ବାୟୁ-ମିଶ୍ରିତ ଜଳ ବହୁପରିମାଣରେ ଗ୍ରହଣ କରିଥାଏ । ପାଟିବାଟେ ପାଣି ନେଲେ ତ ତାହା ଖାଦ୍ୟ-ନଳୀବାଟେ ପେଟଭିତରକୁ ଚାଲିଯିବ । ସେଥିପାଇଁ ମାଛର ତଣ୍ଟି ଦୁଇପଟ କଣା । ଏହି କଣାବାଟେ ପାଣି ଫୁଲୁକା ଉପର ଦେଇ ବହିଯାଏ । ଫୁଲୁକା ବାଟେ ପାଣି ପଦାକୁ ବାହାରିଗଲା ବେଳେ ଗାଲ୍‌ଧୀ ଢାଙ୍କୁଣି ଅଳ୍ପ ମେଲ ହୋଇଯାଏ । ଗୋଟିଏ ମଲା ମାଛ ନେଇ ପରୀକ୍ଷା କଲେ ଦେଖିବ ଯେ ତା' ତଣ୍ଟିର ଦୁଇପାଖରେ ଚାରି ପାଞ୍ଚଟି କରି କଣା ଅଛି ।

**ଡେଣା**—ମାଛ ଦେହରେ ଗୁଡ଼ିଏ ଡେଣା ଥାଏ । ଏଗୁଡ଼ିକୁ ମୀନ-ପକ୍ଷ କହନ୍ତି । ମାଛର ପିଠି ଉପରେ, ସାମନାରେ ଦୁଇ ପାଖେ ଦୁଇଟି ଓ ପଛକୁ ଦୁଇ ପାଖେ ଦୁଇଟି ଓ ତଳ ପେଟରେ ଗୋଟିଏ ମୀନ-ପକ୍ଷ ଥାଏ । ମାଛ ପହଁରୁଥିଲାବେଳେ ଏସବୁ ଡେଣାର ଆହୁଲା ପରି କାମ କରନ୍ତି । ଫଳରେ ମାଛ ପାଣି ଭିତରେ ଏକ ସ୍ଥାନରୁ,

ଅନ୍ୟ ସ୍ଥାନକୁ ଗତି କରିପାରେ । ମାଛ ଭେଦରେ ମୀନ-ପକ୍ଷର ଆକାର ବିଭିନ୍ନ ପ୍ରକାରର ହୋଇଥାଏ ।

ଲାଞ୍ଜ—ମାଛର ଶେଷ ଅଂଶ । ଏଥିରେ ମଧ୍ୟ ମୀନ-ପକ୍ଷ ଥାଏ । ଡଙ୍ଗାରେ ବସି ମଙ୍ଗ ଧରି ଲୋକ ମୋଡ଼ିବା ଭଳି ସେହିପରି ଚଳେ । ମାଛ ଦେହରେ ଲାଞ୍ଜ ମଙ୍ଗର କାମ କରେ ।

ମାଛ ଦେହ ଭିତରେ ଧଳା ଫୋଟକା ଦେଖାଯାଏ । ତା' ଭିତରେ ଏକପ୍ରକାର ଗ୍ୟାସ୍ ଥାଏ । ଗ୍ୟାସ୍‌ର ପରିମାଣ କମ୍ ବେଶୀ କରି ମାଛ ପାଣି ଭିତରେ ତଳକୁ ଖସେ ଓ ଉପରକୁ ଉଠେ ।

କାତି—ମାଛର ଦେହ ଶକ୍ତ କାତିରେ ଭରା । ଘର ଉପରେ ଝିଙ୍କର ଯେପରି ଗୋଟିକ ଉପରେ ଗୋଟିଏ ସଜ୍ଜା ଥାଏ, ମାଛ ଦେହରେ କାତି ସେହିପରି ଖଞ୍ଜା ହୋଇଥାଏ । କାତିର ଗୋଟିଏ ପାଖ ମାଛର ଚମ ଭିତରେ ଲାଗି ରହିଥାଏ ଓ ଅନ୍ୟ ପାଖ ଲାଞ୍ଜଆଡ଼କୁ ଢଳିଥାଏ । ଫଳରେ, ଜଳରେ ଗତି କଲା-ବେଳେ କାତି ଯୋଗୁଁ ମାଛର ଅସୁବିଧା ନ ହୋଇ ବରଂ ସୁବିଧା ହୁଏ । ମାଛର ଚମରୁ ଏକପ୍ରକାର ଲଜୁଆ ପଦାର୍ଥ ସବୁବେଳେ ବାହାରେ । ତଦ୍ୱାରା କାତି ସଫା ରହେ ଓ ଦେହରେ କୌଣସି ମଇଳା ଲାଗି ରହିପାରେ ନାହିଁ । ସେଥିପାଇଁ ମାଛକୁ ହାତରେ ଧରିଲେ ତାହା ସହଜରେ ଖସିଯାଏ । ଅଟୁରି ମଠା, ସେହି କାରଣରୁ ମାଛ କାଟିଲାବେଳେ ପାଉଁଶ ବ୍ୟବହାର କରାଯାଏ । ରୋହି, ଭାକୁର, ମିରିକାଳି, ଭେକଟି, ଖେରୁଳ, କଉ, ଚିତଳ, କେବଣ୍ଡି ପ୍ରଭୃତି ମାଛଙ୍କ ଦେହରେ କାତି ଅଛି । କେତେକ ମାଛ ଅଛନ୍ତି ସେମାନଙ୍କ ଦେହରେ କାତି ଦେଖାଯାଏ ନାହିଁ,ଯଥା— ମାଗୁର, ଶିଙ୍ଗି, ଭାକୁଣ୍ଡି, ବାଲିଆ, ଗୋଡ଼, ଇଚା ଓ ଆଡ଼ ।

## ପ୍ରଶ୍ନ

୧ । ଗୋଟିଏ ମାଛର ଶରୀର ଗଠନ ବର୍ଣ୍ଣନ କର ।

୨ । ମାଛ କ'ଣ ଜଳରେ ବାସ କରିବାପାଇଁ ଉପଯୁକ୍ତ ? କାହିଁକି ଲେଖ ।

୩ । ମାଛର ଶ୍ୱାସ-କ୍ରିୟା ବର୍ଣ୍ଣନ କର ।

୪ । ମୀନ-ପକ୍ଷ ମାଛର କି କାମରେ ଲାଗେ ? ମାଛ ଲାଞ୍ଜର କାର୍ଯ୍ୟ କଅଣ ?

---

## (ଖ) ବେଙ୍ଗ

ମାଛ ବିଷୟ ଆମେ ପୂର୍ବେ ପଢ଼ିଅଛୁ । ଏହା ଗୋଟିଏ ଜଳଚର ପ୍ରାଣୀ । ପାଣିରୁ ଉଠାଇ ନେଲେ ଏହା ବେଶୀକ୍ଷଣ ବଞ୍ଚି ପାରେ ନାହିଁ । ମାଛ ବେଙ୍ଗ ଭୂ-ଜଳଚର ପ୍ରାଣୀ । ଏହା ଜଳରେ ବାସ କରେ, ପୁଣି ଭୂମି ଉପରେ ବାସ କରେ । ସ୍ଥଳରେ ଓ ଜଳରେ ବେଙ୍ଗ ନିଶ୍ୱାସ ପ୍ରଶ୍ୱାସ ଗ୍ରହଣ କରିପାରେ ଓ ନେଇପାରେ । ସ୍ଥଳରେ ପ୍ରଶ୍ୱାସ ନେବାପାଇଁ ବେଙ୍ଗର ଫୁସ୍‌ଫୁସ୍ ଅଛି । ପାଣି ଭିତରେ ଥିଲାବେଳେ ବେଙ୍ଗ ତା'ର ଚମଦ୍ୱାରା ପାଣିରୁ ଅମ୍ଳଜାନ ଗ୍ରହଣ କରିଥାଏ । ବେଙ୍ଗ ପାଣିରେ ଅଣ୍ଡା ଦିଏ । ସେଥିରୁ ଯେଉଁ ଛୁଆ ଫୁଟନ୍ତି, ସେଗୁଡ଼ିକୁ ବେଙ୍ଗଫୁଲ କହନ୍ତି । ବେଙ୍ଗଫୁଲ ଦେଖିବାକୁ ଅବିକଳ ଗୋଟିଏ ମାଛପରି । ଏମାନଙ୍କର ଫୁଲୁକା ଓ ମୀନ-ପକ୍ଷ ଥାଏ । ବଡ଼ ହେଲେ ବେଙ୍ଗର ଫୁଲୁକା ଲୋପ ହୋଇଯାଏ ଏବଂ ଦେହ ଭିତରେ ଫୁସ୍‌ଫୁସ୍ ଜନ୍ମେ । ଆମ ଓଡ଼ିଶାରେ ଅନେକ ଜାତିର ବେଙ୍ଗ ଦେଖାଯାନ୍ତି; ଯଥା—ବ୍ରାହ୍ମଣୀ ବେଙ୍ଗ, ପାଣିବେଙ୍ଗ,

କାଠବେଙ୍ଗ ଓ ଲୁଣିବେଙ୍ଗ । ଲୁଣିବେଙ୍ଗ ଘରକୋଣ ଓ ଅନ୍ଧାରୁଆ ଜାଗାରେ ରହେ ଏବଂ ସଞ୍ଜହେଲେ ପଦାକୁ ବାହାରେ । ବ୍ରାହ୍ମଣୀ-ବେଙ୍ଗର ପିଠି ଝକ୍‌ଝକ, ଓଦାଳିଆ ଓ କେତେକ ପରିମାଣରେ



ଲୁଣିବେଙ୍ଗ    ପାଣିବେଙ୍ଗ

ସବୁଜ ଏବଂ ତଳପାଖ ଈଷତ୍ ହଳଦିଆ । ଲୁଣିବେଙ୍ଗର ଦେହରେ ଛୋଟ ଛୋଟ ବ୍ରଣପରି ବାହାରିଥାଏ । ବେଙ୍ଗମାନେ ପୋକ, ଝଅରପା, ତେଲୁଣିପୋକ, ଜିଆ ଆଦି ଖାଆନ୍ତି ।

ବେଙ୍ଗର ଶରୀରକୁ ମୁଣ୍ଡ ଓ ଗଣ୍ଡି—ଏହି ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ । ତାର ବେକ ବୋଲି କିଛି ନାହିଁ ।

ମୁଣ୍ଡ—ବେଙ୍ଗର ମୁଣ୍ଡ ଆଗଆଡ଼କୁ ଗୋଜିଆ । ମୁଣ୍ଡର ଆଗ ଅଂଶରେ ଦୁଇଟି ଛୋଟ ରନ୍ଧ୍ର ଅଛି । ଏଗୁଡ଼ିକ ବେଙ୍ଗର ନାକରନ୍ଧ୍ର । ସ୍ଥଳରେ ଥିଲାବେଳେ ଏହି ରନ୍ଧ୍ର ବାଟେ ବେଙ୍ଗ ଭିତରକୁ ପବନ ଯାଏ ଓ ଛାଡ଼େ ।

ଆଖି—ବେଙ୍ଗର ମୁଣ୍ଡ ଦୁଇ ପାଖରେ ଦୁଇଟି ବଡ଼ ବଡ଼ ଗୋଲ ଆଖି ଉପରକୁ ବାହାରିଥାଏ । ଆଖିର ଏପରି ପ୍ରକୃତି ଯୋଗୁଁ ବେଙ୍ଗ ଆଗ, ପଛ ଓ କଡ଼ ସବୁଆଡ଼େ ସ୍ପଷ୍ଟଭାବେ

ଦେଖିପାରେ । ଆଖିର ଉପରକୁ ଓ ତଳକୁ ତା'ର ଆଖିପତା ଅଛି । ବିଶ୍ରାମ କରୁଥିବାବେଳେ ବେଙ୍ଗର ଆଖି ଭିତରକୁ ପଶିଯାଏ ଏବଂ




'ବେଙ୍ଗ ଦେହର ଭିନ୍ନ ଭିନ୍ନ ଅଂଶ

୧—ଆଖି, ୨—ନାକରନ୍ଧ୍ର, ୩—ପାଟି, ୪—କାନପରଦା, ୫—ଅଙ୍ଗୁଳି, ୬—ହାତ, ୭—ଅଗ୍ରବାହୁ, ୮—ବାହୁ, ୯—କହୁଣି, ୧୦—ପେଟ, ୧୧—ଜଙ୍ଘ, ୧୨—ଆଣ୍ଠୁ, ୧୩—ପେଣ୍ଡୁ, ୧୪—ବଳାଗଣ୍ଠି, ୧୫—ପାଦ, ୧୬—ପାଦର ଅଙ୍ଗୁଳି ।

ଉପର ଆଖିପତା ତାକୁ ଘୋଡ଼ାଇ ପକାଏ । ମାତ୍ର ତଳ ଆଖିପତା ଛୋଟ ହୋଇଥିବାରୁ ତାହା ଆଖିକୁ ଘୋଡ଼ାଇ ପାରେ ନାହିଁ । ତଳ ଆଖିପତାକୁ ଲାଗି ଗୋଟିଏ ପତଳା ପରଦା ଅଛି । ପାଣିରେ ଥିଲାବେଳେ ଏଇ ପରଦାଟି ବେଙ୍ଗ ଆଖିକୁ ଢାଙ୍କି ରଖିଥାଏ । ତେଣୁ ବେଙ୍ଗ ପାଣି ଭିତରେ ଥିଲାବେଳେ ତା' ଆଖିରେ ପାଣି ପଶିଯାଏ ନାହିଁ କି ତାକୁ ଦେଖିବାକୁ ଅସୁବିଧା ହୁଏ ନାହିଁ ।

ବେଙ୍ଗ ଆଖିର ପଛକୁ ଗୋଟିଏ ଲେଖାଏଁ ଗୋଲ ଛୁପ ଚିହ୍ନ ଅଛି । ଏଗୁଡ଼ିକ ତା'ର କାନ ପରଦା ।

ଜିଭ—ବେଙ୍ଗର ଦେହକୁ ଚାହିଁ ତା' ପାଟିଟି ବଡ଼ । ତା'ର ଉପର ପାଟିରେ ଦାନ୍ତ ଅଛି । ଆମ ପାଟିରେ ଜିଭ ତଣ୍ଟି ଆଡ଼କୁ ଲାଗିଥାଏ । ମାତ୍ର ବେଙ୍ଗର ଜିଭ ତଳପାଟିର ଅଗକୁ



ବେଙ୍ଗ ଜିଭ ସାହାଯ୍ୟରେ ଆହାର ଧରୁଛି

ଲାଗି ରହିଥାଏ । ଆହୁରି ମଧ୍ୟ ଜିଭଟି ଅଣ୍ଠେଇଆ । ସେ ଯେତେବେଳେ ପୋକଟିଏ ଉଡ଼ୁଥିବାର ଦେଖେ, ଚଟକରି ଜିଭଟି ବଢ଼େଇ ଦିଏ । ଜିଭ ତଳ ପାଟିର ଅଗରେ ଲାଗିଥିବାରୁ ପାଟି ଖୋଲିବା ମାତ୍ରେ ତାହା ବାହାରି ଯାଇ ପୋକ ଦେହରେ ଲାଗିଯାଏ । ବେଙ୍ଗ ଜିଭ ଅଠାଳିଆ । ତେଣୁ ପୋକ ସହଜରେ ଖସି ପଳାଇ

ପାରେ ନାହିଁ । ସେ ଚତୁରତାର ଜନ୍ତୁକୁ ପାଟି ଭିତରକୁ ଟାଣି ଆଣି ଚଣ୍ଡି ଭିତରକୁ ଖାଦ୍ୟ-ଗୁଡ଼ିକୁ ଠେଲି ଗିଳି ପକାଏ ।

**ଆଗ ଓ ପଛ ଗୋଡ଼—**ବେଙ୍ଗର ଗଣ୍ଡିର ସାମନା ପଟରେ ଦୁଇଟି ଓ ପଛପଟେ ଦୁଇଟି ଗୋଡ଼ ଅଛି । ପଛ ଗୋଡ଼ ଆଗ ଗୋଡ଼ଠାରୁ ଲମ୍ବା ଓ ମୋଟା । ଆଗ ଗୋଡ଼ ପାପୁଲିରେ ଚାରିଟି ଓ ପଛ ଗୋଡ଼ ପାପୁଲିରେ ପାଞ୍ଚଟି କରି ଆଙ୍ଗୁଠି । ପଛ ଗୋଡ଼ର ଆଙ୍ଗୁଠିଗୁଡ଼ିକ ପତଳାଚମଦ୍ୱାରା ପରସ୍ପର ସଂଯୁକ୍ତ ହୋଇଥାଏ । ଫଳରେ ବେଙ୍ଗକୁ ପାଣିରେ ପହଁରିବାକୁ ସୁବିଧା ହୁଏ । କାରଣ, ପଛ ଗୋଡ଼ ଆହୁଲାର କାମ କରେ । ଆହୁରି ମଧ୍ୟ, ଏଗୁଡ଼ିକ ବଡ଼ ହୋଇଥିବାରୁ ବେଙ୍ଗ ଭୂଇଁରେ ଭଲ ଡେଇଁ ପାରେ ।

ବେଙ୍ଗ ଆମର ଏକ ଉପକାରୀ ପ୍ରାଣୀ । ଫସଲ ନଷ୍ଟ କରୁଥିବା ପୋକମାନଙ୍କୁ ସେ ଖାଇ କୃଷକର ପ୍ରଭୂତ ଉପକାର କରେ ।

## ପ୍ରଶ୍ନ

୧ । ବେଙ୍ଗର ଅବୟବ ବର୍ଣ୍ଣନ କର ।

୨ । ବେଙ୍ଗ ମୁଣ୍ଡର ବିଭିନ୍ନ ଅଂଶର କାର୍ଯ୍ୟ ଲେଖ ।

୩ । (କ) ବେଙ୍ଗ କଅଣ ଖାଏ ?

(ଖ) ବେଙ୍ଗ ପାଣି ଭିତରେ ଦେଖି ପାରେ କି ?

---

## (ଗ) ସାପ

ସାପ ମେରୁଦଣ୍ଡୀ ପ୍ରାଣୀ । ଭାରତରେ ପ୍ରାୟ ତିରିଶହ ଜାତିର ସାପ ବାସ କରନ୍ତି । ଏମାନଙ୍କ ମଧ୍ୟରୁ କେତେକ ସ୍ଥଳରେ ଓ କେତେକ ଜଳରେ ବାସ କରନ୍ତି । ସବୁ ସାପଙ୍କର ବିଷ ଅଛି ।

ଆହାର-ଶାବକୁ ବଧ କରିବା ପାଇଁ ଏହି ବିଷ ବ୍ୟବହୃତ ହୁଏ। ସବୁ ସାପର ବିଷ ମଣିଷକୁ କାଟିଲାବେଳେ ନାହିଁ । ଯେଉଁ ସାପ ଦଂଶନରେ ମଣିଷର ମୃତ୍ୟୁ ହୁଏ ତାକୁ ବିଷଧର ଓ ଅନ୍ୟ ସାପମାନଙ୍କୁ ବିଷହୀନ ସାପ କୁହାଯାଏ । ସମୁଦ୍ରରେ ବାସ କରୁଥିବା ସବୁ ସାପ ବିଷାକ୍ତ । ସ୍ଥଳବାସୀ ସାପମାନଙ୍କ ମଧ୍ୟରେ ଅଧିକାଂଶ ବିଷହୀନ । ଆମ ଓଡ଼ିଶାରେ ଦେଖାଯାଉଥିବା ସ୍ଥଳବାସୀ ବିଷାକ୍ତ ସାପମାନଙ୍କ ମଧ୍ୟରେ ଗୋଖର, ଚନ୍ଦନବୋଡ଼ା, ବୋଡ଼ା, ରଣା ଓ ଚିତି ପ୍ରଧାନ । ଅଧିକାଂଶ ସାପ ଅଣ୍ଡା ଦିଅନ୍ତି । ସାମୁଦ୍ରିକ ସାପ, ଚନ୍ଦନବୋଡ଼ା ଆଦି ସାପମାନେ ଛୁଆ ଜନ୍ମ କରନ୍ତି । ପ୍ରତିବର୍ଷ ଆମ ଓଡ଼ିଶାରେ ବହୁତ ଲୋକ ସାପ କାମୁଡ଼ାରେ ମରନ୍ତି । ସାପକୁ ଆଘାତ ନ ଦେଲେ ସେ ସାଧାରଣତଃ କାମୁଡ଼େ ନାହିଁ । ସାପ ଯୋଗୁଁ ଆମର ବହୁ ଉପକାର ମଧ୍ୟ ହୁଏ । ମୂଷା ସାପଙ୍କର ଏକ ପ୍ରିୟ ଖାଦ୍ୟ । ଯଦି ସାପ ନ ଥାନ୍ତେ ତେବେ ଆମକୁ ବହୁତ ବେଶୀ ମୂଷାଙ୍କ ଉତ୍ପାତ ସହିବାକୁ ପଡ଼ନ୍ତା । ସାପଙ୍କର ଗୋଡ଼ ନ ଥାଏ । ସେମାନେ ପେଟରେ ଭରା ଦେଇ ଚାଲନ୍ତି । ସ୍ଥଳବାସୀ ସାପ ସାଧାରଣତଃ ଗର୍ତ୍ତରେ ବାସ କରନ୍ତି । ଗୋଡ଼ ନ ଥିବାରୁ ଗାତରେ ପଶିବାକୁ ସେମାନଙ୍କୁ ସୁବିଧା ହୁଏ । ସାପମାନଙ୍କର ଦେହ ଓ ମୁଣ୍ଡ କାତିରେ ଭରା । ସବୁ ସାପଙ୍କ ଜିଭ ଦ୍ୱିଫାଳିଆ ।

**ଗୋଖର**—ଗୋଖର ସାପ ଉଇହୁଙ୍କା, ଇଟାଦେଉଳ, ଇଟାଘର, ଇଟାଗଦା, ଗଛକୋରଡ଼ ଇତ୍ୟାଦିରେ ରହନ୍ତି । ମୂଷା ଖାଇବା ପାଇଁ ଏମାନେ ଘର ଭିତରେ ମଧ୍ୟ ପଶନ୍ତି । ଗୋଖରର ଅନ୍ୟ ନାମ ନାଗ । ଧାନ ବିଲର ହିଡ଼ମାନଙ୍କରେ ମଧ୍ୟ ଗୋଖର ରହନ୍ତି । ଏମାନଙ୍କୁ ଫଣି କହନ୍ତି । ନାଗସାପର ରଙ୍ଗ ହଳଦିଆ ।

ମାଟ ରଙ୍ଗ ବାଦାମୀ ରଙ୍ଗ । ବାସସ୍ଥାନର ରଙ୍ଗ ଅନୁସାରେ ଗୋଖରମାନଙ୍କର ରଙ୍ଗ ହୋଇଥାଏ । ସବୁଜ, କଳା ଓ ମାଟିଆ ରଙ୍ଗର ଗୋଖର ମଧ୍ୟ ଦେଖାଯାନ୍ତି ।



ଗୋଖର

ବୋତଲରେ ରଖାଯାଇଥିବା ଗୋଟିଏ ମୃତ ଗୋଖର ନେଇ ତା'ର ଶରୀରର ବହିର୍ଭାଗ ଅଂଶ ପରୀକ୍ଷା କର ।

**ଶରୀର ଗଠନ**—ସାପର ଦେହକୁ ତିନି ଭାଗରେ ବିଭକ୍ତ କରାଯାଇ ପାରେ; ଯଥା—ମୁଣ୍ଡ, ଦେହ ଓ ଲାଞ୍ଜ । ଲାଞ୍ଜ ଅଗଆଡ଼କୁ ସରୁ ।

**ମୁଣ୍ଡ**—ଗୋଖର ସାପର ମୁଣ୍ଡ ଚେପ୍‌ଟା, ଆଗଆଡ଼କୁ ସରୁ ଓ ପଛଆଡ଼କୁ ଓସାରିଆ । ସବୁ ସାପଙ୍କ ମୁଣ୍ଡର ସାଧାରଣ ଆକାର

ସେହିପରି । ମୁଣ୍ଡର ସାମନା ଆଡ଼କୁ ଦୁଇଟି ଗର୍ତ୍ତ ଅଛି । ଏ ଦୁଇଟି ସାପର ନାକପୁଡ଼ା । ସାପମାନଙ୍କର ଫୁସ୍ ଫୁସ୍ ଲମ୍ବା । ଚିଡ଼ିଗଲେ




ଗୋଖର ସାପର ମୁଣ୍ଡ

ବା ଉତ୍ତ୍ୟକ୍ତ ହେଲେ ଗୋଖର ଜୋରରେ ଏଇ ନାକପୁଡ଼ା ବାଟେ ପବନ ନିଏ ଓ ଛାଡ଼େ । ଫଳରେ ଫଁ ଫଁ ଶବ୍ଦ ହୁଏ । ଏହାକୁ ଗୋଖରର ଗର୍ଜନ କହନ୍ତି । ନାକପୁଡ଼ା ଉପରକୁ ଦୁଇପାଖେ ଦୁଇଟି ଆଖି ଅଛି । ସାପର ପାଟି ବହୁତ ବଡ଼ । ଏଣୁ ଖାଦ୍ୟ-ଜୀବ ଗିଳିଲାବେଳେ ପାଟି ବେଶୀ ମେଲା ହୋଇପାରେ ଓ ତାକୁ କଷ୍ଟ ହୁଏ-ନାହିଁ । ତୁମ୍ଭେମାନେ ଗୋଖରର ମୁଣ୍ଡକୁ ପରୀକ୍ଷା କଲେ ଦେଖିବ ଯେ ନାକରନ୍ଧ୍ର ବ୍ୟତୀତ ତା'ମୁଣ୍ଡରେ ଅନ୍ୟ କୌଣସି ରନ୍ଧ୍ର ନାହିଁ । ସାପଙ୍କର କାନ ରନ୍ଧ୍ର ନ ଥାଏ ।

**ଦାନ୍ତ**—ସବୁ ସାପଙ୍କର ଉପର ଓ ତଳ ପାଟିରେ ଦାନ୍ତ ଥାଏ । ଗୋଖର ପରି ବିଷାକ୍ତ ସାପଙ୍କର ସାଧାରଣ ଦାନ୍ତ ବ୍ୟତୀତ ଉପରେ ପାଟିର ଦୁଇପଟେ ଗୋଟିଏ କରି ବଡ଼ ବିଷଦାନ୍ତ ଥାଏ । ସାପ ଦାନ୍ତ ସାହାଯ୍ୟରେ ଚୋବାନ୍ତି ନାହିଁ । ଖାଦ୍ୟ-ଜୀବ ପାଟି ଭିତରୁ ଯେପରି ଖସି ନ ଯିବ ସେଥିରେ ଦାନ୍ତ ସାହାଯ୍ୟ କରେ ଓ

ସେଥିପାଇଁ ସେଗୁଡ଼ିକ ଭିତର ଆଡ଼କୁ ବଙ୍କା । ଆହାର ଜୀବକୁ ବଳବାନ୍ ଦାନ୍ତ କାମୁଡ଼ିବା ଫଳରେ ବଷର୍ଦ୍ଦିସ୍ଥା ଯୋଗୁଁ ତାହା ମରିଯାଏ ।

କାତି—ସାପର ଦେହ କାତରେ ଭରା । ଅଧିକାଂଶ ସାପଙ୍କର ମୁଣ୍ଡ, ପିଠି ପେଟ ଓ ଲାଞ୍ଜତଳପାଖର କାତ ଭିନ୍ନଭିନ୍ନ ଆକାରର । ଗୋଖର ସାପର ପେଟର କାତ ଦୁଇକଡ଼କୁ ପୂର୍ଣ୍ଣଭାବେ ବିସ୍ତୃତ । ପିଠିର କାତ ପେଟର କାତଠାରୁ ବହୁତ ଛୋଟହୁଏ । ମୁଣ୍ଡର କାତ କେତୋଟି ଛୋଟ ଓ କେତୋଟି ବଡ଼ ।



ଗୋଖର ସାପ ପେଟର କାତ

ଆଖି—ଆଗରୁ କୁହା ଯାଇ ଅଛି, ସାପର ମୁଣ୍ଡ ଦୁଇପଟେ ଗୋଟିଏ କରି ଆଖି ଅବସ୍ଥିତ । ଏମାନଙ୍କର ଆଖିପତା ନାହିଁ । ଗୋଟିଏ ସ୍ୱଚ୍ଛ କାତଦ୍ୱାରା ଢ଼କା ଥାଏ । ଏହା ଆଖିକୁ ରକ୍ଷାକରେ । ଆଖିପତା ନ ଥିବାରୁ ସାପ ଆଖି କେବେହେଲେ ବନ୍ଦ ହୁଏ ନାହିଁ । ସେଥିପାଇଁ ଗୋଖର ଯେତେବେଳେ ଫଣା ଟେକି ଠିଆ ହୁଏ, ମନେ ହୁଏ ସେ ଯେପରି ଏକଲୟରେ ଅନାଇ ରହିଛି । ସାପଙ୍କ ଆଖି ଭାରି ତୀକ୍ଷ୍ଣ । ପୁଣି ସାପଙ୍କର ବାହାର କାନରନ୍ଧ୍ର ନାହିଁ । ଏଥିପାଇଁ ସାପର ଅନ୍ୟ ନାମ 'ଚକ୍ଷୁଶ୍ରବା' । ଏହାର ଅର୍ଥ ଆଖିରେ ଶୁଣିବା । ପ୍ରକୃତ ପକ୍ଷେ, ସାପ ଆଖିରେ ଶୁଣନ୍ତି ନାହିଁ । ଆଖି କେବଳ ଦେଖିବାରେ ବ୍ୟବହୃତ ହୁଏ । ଭୂମିରେ ଶବ୍ଦ ହେଲେ ସେମାନେ ସହଜରେ ଜାଣି ପାରନ୍ତି ।

**ଫଣା**—ଗୋଟିଏ କାରଣରୁ ଗୋଖର ସାପକୁ ସହଜରେ ଚିହ୍ନିହୁଏ । ବିପଦର ସୂଚନା ପାଇଲମାତ୍ରେ ଏହା ଦେହର ଏକ ତୃତୀୟାଂଶ ଭୂମିଉପରକୁ ଟେକି ଠିଆ ହୋଇଯାଏ । ଗୋଖର ବେକର ହାଡ଼ ଲମ୍ବା । ଫଣା ଟେକିଲେ ଚଟାଳିଆ ହୋଇଯାଏ ଏବଂ ବଡ଼ ହୋଇଯାଏ । ତାକୁ ଫଣା କହନ୍ତି । ଗୋଖରର ମୁଣ୍ଡ ପଛକୁ କଠଉ ଚିହ୍ନ ଅଛି । ଫଣା ଟେକିଲେ ଏହା ସ୍ପଷ୍ଟ ଦେଖିହୁଏ । ଭମ୍ପସାପଙ୍କ ଫଣାରେ କଠଉ ଚିହ୍ନ ବଦଳରେ ଗୋଲ ଚିହ୍ନ ଥାଏ । କେତେକ ଗୋଖରଙ୍କ ଫଣାରେ କୌଣସି ଚିହ୍ନ ନ ଥାଏ ।



ଗୋଖର ସାପର ଫଣା

**ବିଷଥଳୀ**—ଗୋଖର ସାପର ଉପର ପାଟିରେ ଦୁଇଟି ବିଷଦାନ୍ତ ଅଛି ବୋଲି ପୂର୍ବ କୁହାଯାଇଅଛି । ବିଷଦାନ୍ତ ପଛକୁ ଗୋଟିଏ କରି ବିଷଥଳୀ ଥାଏ । ସାପ ଦଂଶନ କଲେ ବିଷ ଦାନ୍ତ ଦଂଶିତ ପ୍ରାଣୀ ବା ମନୁଷ୍ୟ ଦେହରେ ଗଳିଯାଏ ଓ ବିଷଥଳୀରୁ ବିଷ କ୍ଷରିତ ହୋଇ କ୍ଷତରେ ପଡ଼େ । ବିଷ ରକ୍ତରେ ମିଶି ପ୍ରାଣୀ ବା ମନୁଷ୍ୟର ମୃତ୍ୟୁ ଘଟାଏ ।




ଗୋଖର ସାପର ମୁଣ୍ଡ

## ପ୍ରଶ୍ନ

୧ । ଗୋଖର ସାପ ବିଷୟରେ ଗୋଟିଏ କ୍ଷୁଦ୍ର ପ୍ରବନ୍ଧ ଲେଖ ।

୨ । ଫଣା କାହାକୁ କହନ୍ତି ? ଗୋଖର କାହିଁକି ଫଣା ତୋଳେ ?

୩ । ଗୋଖରର ମୁଣ୍ଡର ବଡ଼ଲ ଅଂଶ ବର୍ଣ୍ଣନ କର ।

୪ । ଗୋଖରର ଦାନ୍ତ କ'ଣ କାର୍ଯ୍ୟରେ ବ୍ୟବହୃତ ହୁଏ ?

୫ । ସାପକୁ କାହିଁକି ଚକ୍ଷୁଶ୍ରବା କହନ୍ତି ?

---

## (ଘ) ଗାଈ

ଗାଈ ଗୋଟିଏ ଚତୁଷ୍ପଦ ଗୃହପାଳିତ ପ୍ରାଣୀ । ଯେତେ ପ୍ରାଣୀ ଅଛନ୍ତି [illegible] ତନ୍ମଧ୍ୟରେ ଏ ମର ସବୁଠାରୁ ଉପକାରୀ ।



ଗାଈ

ଗାଈ କ୍ଷୀର ଏକ ପୁଷ୍ଟିକର ଖାଦ୍ୟ; ବାଳୁତ କାଳେ ଏହା ଆମର

ପ୍ରଧାନ ଆହାର ହୋଇଥାଏ । କୃଷିକାର୍ଯ୍ୟରେ ଓ ଗାଡ଼ି ଟାଣିବାରେ ବଳଦ ବ୍ୟବହୃତ ହୁଅନ୍ତି । ଗାଈର ମୂତ୍ର ଓ ମଳ କ୍ଷେତକୁ ଉର୍ବର କରେ । ଗାଈ ଚମଡ଼ାରେ ଯୋତା ଓ ଶିଙ୍ଗରେ ପାନିଆ, ବୋତାମ, ଖେଳନା ଆଦି ପ୍ରସ୍ତୁତ ହୁଏ । ଗାଈର ମେରୁଦଣ୍ଡ ଅଛି । ଏହାର ଦେହ ଲୋମରେ ଆବୃତ । ଗାଈ ତା' ଛୁଆକୁ କ୍ଷୀର ପିଆଏ । ଏଣୁ ଗାଈ ଗୋଟିଏ ମେରୁଦଣ୍ଡୀ ଓ ସ୍ତନ୍ୟପାୟୀ ପ୍ରାଣୀ ।

**ସାଧାରଣ ଶରୀର ଗଠନ**—ଶରୀରର ଆକାର ତୁଳନାରେ ଏହାର ପେଟ ଖୁବ୍ ବଡ଼ । ଗାଈ ଚମ ମୋଟା । ସେମାନେ ଅନେକ ରଙ୍ଗର ହୁଅନ୍ତି; ଯଥା—ଧଳା, କଳା, ବାଦାମୀ, ଛଇଛଇକା । ଗାଈର ବେକ ଲମ୍ବା ଓ ଓସାରିଆ । ବେକ ତଳକୁ ମାଂସଳ ଚମ ଝୁଲୁଥାଏ । ଏହାକୁ ଗଳକମ୍ବଳ କହନ୍ତି । ଏହାର ପିଠିରେ ଗୋଟିଏ ଛୋଟ କୁଦ ଅଛି । ତାହାକୁ କକୁଦ କହନ୍ତି । ବିଲାତର ଗାଈମାନଙ୍କ ପିଠିରେ କକୁଦ ନ ଥାଏ ।

**ମୁଣ୍ଡ**—ଦେହର ଆକାର ତୁଳନାରେ ଗାଈର ମୁଣ୍ଡ ଛୋଟ ଓ ଲମ୍ବା । ମୁଣ୍ଡରୁ ଦୁଇଟି ଶିଙ୍ଗ ବାହାରିଥାଏ । ଶିଙ୍ଗ ଫମ୍ପା ଓ ମୁନିଆଁ । ଜାତି ଅନୁସାରେ ଗାଈର ଶିଙ୍ଗ ଭିନ୍ନ ଭିନ୍ନ ପ୍ରକାରର ହୋଇଥାଏ; ଯଥା—ସିଧା, ଖାଡ଼ିଆ, ମୁଣ୍ଡକଟା । ଅନ୍ୟ ଜନ୍ତୁର ଆକ୍ରମଣରୁ ରକ୍ଷା କରିବା ପାଇଁ ଶିଙ୍ଗ ବ୍ୟବହୃତ ହୁଏ । ବିପଦର ଆଶଙ୍କା କଲେ ସେ ମୁଣ୍ଡ ନୁଆଁଇ ଭୁଷିବାକୁ ଚେଷ୍ଟା କରେ ।

ଗାଈର ମୁଣ୍ଡ ଦୁଇପଟେ ଦୁଇଟି ଲମ୍ବା ଆଖି ଅଛି । ସେଥିପାଇଁ ସେ ସାମନା ଓ ଦୁଇପାଖ ସହଜରେ ଦେଖିପାରେ । ଆଖିପତାରେ ଲମ୍ବା ଲମ୍ବା ଲୋମଥିବାରୁ ତାହା ଧୂଳିକୁ ଛାଣି ରଖେ ।

ଆଖିର ଉପରକୁ ଓ ଶିଙ୍ଗ ତଳକୁ ମୁଣ୍ଡର ଦୁଇପଟେ ଦୁଇଟି କାନ ଅଛି । ଗାଈର କାନ ଲମ୍ବା । ସେ ଇଚ୍ଛାନୁସାରେ ଏଗୁଡ଼ିକୁ

ହଲଇ ଆଖି ଉପରୁ ମାଛି ଓ ମଶାଙ୍କୁ ଘଉଡ଼ାଇ ଦିଏ । ଗାଈ ଭଲ ଶୁଣିପାରେ ।

ଗାଈ ମୁଣ୍ଡରେ ଆଗ ଆଡ଼କୁ ଦୁଇଟି ବଡ଼ ଗର୍ତ୍ତ ଅଛି । ଏଗୁଡ଼ିକ ତା'ର ନାକପୁଡ଼ା । ନାକପୁଡ଼ା ବାଟେ ସେ ପବନ ନିଏ ଓ ଛାଡ଼େ । ଗାଈର ଆଘ୍ରାଣ ଶକ୍ତି ପ୍ରବଳ । ଖାଇବା ଆଗରୁ ସେ ଖାଦ୍ୟକୁ ଶୁଙ୍ଘେ ।



ଗାଈ ମୁଣ୍ଡର କଙ୍କାଳ

ମୁଣ୍ଡର ସବା ଆଗରେ ପାଟି । ଏହା ଲମ୍ବା ଓ ଚଉଡ଼ା । ଏଣୁ ଥରକେ ସେ ବହୁତ ଖାଦ୍ୟ ପାଟି ଭିତରକୁ ନେଇ ପାରେ । ପାଟି ଭିତରେ ଦାନ୍ତ ଓ ଜିଭ ଅବସ୍ଥିତ । ଜିଭ ଲମ୍ବା, ଓସାରିଆ ଓ ମୋଟା । ଜିଭର ଉପର ଖଦଡ଼ିଆ । ଗାଈ ଜିଭ ବଢ଼ାଇ ଘାସ, କୁଟା, ପତ୍ର ଆଦି ପାଟି ଭିତରକୁ ନିଏ । ନାକରେ ଲାଗିଥିବା ଖାଦ୍ୟ ପଦାର୍ଥକୁ ସେ ତା' ଜିଭରେ ଚାଟି ସଫାକରେ ।

**ଦାନ୍ତ**—ଗାଈର ପାଟିରେ ବତିଶଟି ଦାନ୍ତ । ଏଥିରୁ ବାରଟି ଦାନ୍ତ ଉପର ପାଟିରେ ଓ କୋଡ଼ିଏଟି ଦାନ୍ତ ତଳ ପାଟିରେ ଥାଏ । ଉପର ପାଟିରେ ଛୁମୁଦାନ୍ତ ନାହିଁ, କେବଳ ଶକ୍ତ ମାଢ଼ି ଅଛି । ତଳ ପାଟିରେ ସେହି ସ୍ଥାନରେ ଆଠଟି ତୀକ୍ଷ୍ଣ ଦାନ୍ତ ଅଛି । ଏଗୁଡ଼ିକୁ ଛେଦନ ଦାନ୍ତ କହନ୍ତି । ଉପର ପାଟିରେ ଓ ତଳ ପାଟିରେ ଦୁଇ କଡ଼ରେ ଛଅଟି କରି କଳଦାନ୍ତ ଅଛି । ଅର୍ଥାତ୍ ଉପର ପାଟିରେ ବାରଟି କଳଦାନ୍ତ, ତଳ ପାଟିରେ ବାରଟି କଳଦାନ୍ତ । ଏଗୁଡ଼ିକୁ ପେଷଣ ବା ଚର୍ବଣ ଦାନ୍ତ କହନ୍ତି ।




୧—ଶକ୍ତ ମାଢ଼ି ସାହାଯ୍ୟରେ ଗାଈ ଘାସ ଖାଏ, ଗାଈର ଖୁରା ୨—ଆଗପଟ ଓ ୩—ପଛପଟ ।

ଶକ୍ତ ମାଢ଼ି ଓ ଛୁମୁଦାନ୍ତ ସାହାଯ୍ୟରେ ଗାଈ ଘାସ ପତ୍ର ଛିଣ୍ଡାଇ ପକାଏ ଓ କଳ ଦାନ୍ତରେ ଚୋବାଏ । ତରତର ହୋଇ ଖାଇଲାବେଳେ ସେ ଖାଦ୍ୟପଦାର୍ଥକୁ ଚୋବାଏ ନାହିଁ । ପରେ ବିଶ୍ରାମ ନେଲାବେଳେ ଗିଳିଥିବା ଖାଦ୍ୟକୁ ପାଟିକୁ ଆଣି ଚୋବାଇ ଖାଏ । ଏହାକୁ ପାକୁଳି ବା ପାଗୁଳି କରିବା କହନ୍ତି । ଗାଈ, ଛେଳି ଆଦି ପ୍ରାଣୀମାନେ ପାଗୁଳି କରନ୍ତି ବୋଲି ସେମାନଙ୍କୁ ରୋମନ୍ଥକ ପ୍ରାଣୀ କୁହାଯାଏ ।

ଗାଈ ଓ ଅନ୍ୟ ରୋମନ୍ଥକ ପ୍ରାଣୀମାନଙ୍କର ପାକସ୍ଥଳୀ ଚାରିଗୋଟି କୋଠରୀରେ ବିଭକ୍ତ । ପ୍ରଥମ କୋଠରୀ ବା ଥଳି ସବୁଠାରୁ ବଡ଼ । ଚରଚର ହୋଇ ଗିଳିଥିବା ଖାଦ୍ୟ ପ୍ରଥମ ଥଳୀରେ ଆସି ଜମା ହୁଏ । ଏଠାରେ ତାହା ପାଚନ ରସ ଦ୍ୱାରା ନରମ ହୁଏ । ତା'ପରେ ଖାଦ୍ୟ ଦ୍ୱିତୀୟ କୋଠରୀ ବା ଥଳିକୁ




ଗାଈର ପାକସ୍ଥଳୀ

ଆସେ । ଏଥିରେ ମହୁଫେଣୀର ଛିଦ୍ର ପରି ଅନେକ ଛିଦ୍ର ଅଛି । ତେଣୁ ତାକୁ ମଧୁଚକ୍ର ଥଳି କହନ୍ତି । ଗାଈ ବିଶ୍ରାମ କରୁଥିବାବେଳେ ଖାଦ୍ୟବସ୍ତୁ ଦ୍ୱିତୀୟ କୋଠରୀରୁ ଢେଲା ଢେଲା ହୋଇ ପାଟିକୁ ଆସେ । ଗାଈ ତାହା ଭଲକରି ଚୋବାଇ ପୁଣି ଗିଳେ । ଏଥର ଖାଦ୍ୟ ତୃତୀୟ ଥଳିକୁ ଯାଏ ଓ ସେଠାରେ ଅଧିକ ନରମ ହୋଇ ଚତୁର୍ଥ ଥଳିରେ ପହଞ୍ଚେ । ଏଠାରେ ଖାଦ୍ୟ ଜୀର୍ଣ୍ଣ ହୁଏ । ଦେଖିବାକୁ ଗଲେ ଚତୁର୍ଥ ଥଳିଟି ପ୍ରକୃତ ପାକସ୍ଥଳୀର କାର୍ଯ୍ୟ କରେ ଓ ଅନ୍ୟ ତିନୋଟି ଥଳି ତା'ର ସହଯୋଗୀ ରୂପେ କାର୍ଯ୍ୟ କରନ୍ତି ।

ଗୋଡ଼—ଗାଈର ଚାରୋଟି ଗୋଡ଼ । ପ୍ରତି ଗୋଡ଼ ଶେଷରେ ଖୁରା ଅଛି । ଏହା ଶକ୍ତ ଓ ଦୁଇଫାଳିଆ । କାଦୁଅରେ ଚାଲିବାବେଳେ

ଖୁର ମଝିରେ କାଦୁଅ ବାହାରିଯାଏ । ଫଟାଳିଆ ଖୁର ଯୋଗୁଁ କାଦୁଅରେ ଚାଲିବାକୁ ଗାଈଙ୍କୁ ଅସୁବିଧା ହୁଏ ନାହିଁ । ଗୋଡ଼ର ପଛପଟେ ଖୁର ଉପରକୁ ଅଙ୍ଗୁଳି ଚଣ ଦୁଇଟି ବୋଳା ଅଛି ।

ପହ୍ନା—ପଛଗୋଡ଼ ମଝିରେ ପେଟତଳେ ଗାଈର ପହ୍ନା ଅଛି । ପହ୍ନାରେ ଚାରିଟି ଚର । ଚର ଅଗରେ ଛୋଟ ରନ୍ଧ୍ର ଅଛି । ବାଛୁରି ତା'ପାଟିରେ ଚରକୁ ଚିପି କ୍ଷୀର ପିଏ । ଆମ୍ଭେ ଆଙ୍ଗୁଠିରେ ଚିପି ଓଟାରିଲେ ରନ୍ଧ୍ର ଦେଇ କ୍ଷୀର ବାହାରେ ।

ଲାଞ୍ଜ—ଗାଈର ଲାଞ୍ଜ ଲମ୍ବା । ଲାଞ୍ଜ ଅଗରେ ବୋଛାଏ ଲମ୍ବା ବାଳ ଅଛି । ମଶା, ମାଛି, ଡାଆଁଶ ଆଦି ତାଙ୍କ ଦେହରେ ବସି ତାକୁ ବ୍ୟତିବ୍ୟସ୍ତ କଲେ ସେ ସେମାନଙ୍କୁ ଲାଞ୍ଜରେ ପିଟି ଘଉଡ଼ାଇ ଦିଏ ।

## ପ୍ରଶ୍ନ

୧ । ଗାଈ ଶରୀରର ବିଭିନ୍ନ ଅଂଶର ନାମ ଲେଖ ଓ ସେମାନଙ୍କର କାର୍ଯ୍ୟ ସଂକ୍ଷେପରେ ବର୍ଣ୍ଣନ କର ।

୨ । ଗାଈ ମୁଣ୍ଡର ବିଭିନ୍ନ ଅଂଶସବୁ କଅଣ ? ସେସବୁ ତା'ର କି କି କାର୍ଯ୍ୟରେ ବ୍ୟବହୃତ ହୁଏ ?

୩ । ଖୁର ଏବଂ ଲାଞ୍ଜ ନ ଥିଲେ ଗାଈର କି କି ଅସୁବିଧା ହୁଅନ୍ତା ?

୪ । ନିମ୍ନଲିଖିତ ବିଷୟରେ ସଂକ୍ଷିପ୍ତ ବିବରଣୀ ଲେଖ:—
(କ) କକୁଦ (ଖ) ଖୁର (ଗ) ଲାଞ୍ଜ (ଘ) ପହ୍ନା ।

———

## (ଙ) ବିରାଡ଼ି

ବିରାଡ଼ି ଗୋଟିଏ ଗୃହପାଳିତ ପ୍ରାଣୀ । ଜଙ୍ଗଲରେ ମଧ୍ୟ ବଣୁଆ ବିରାଡ଼ି ଦେଖାଯାଆନ୍ତି । ଏହା ମେରୁଦଣ୍ଡୀ ଓ ସ୍ତନ୍ୟପାୟୀ । ଯେଉଁ ପ୍ରାଣୀମାନେ ଆମିଷ ଖାନ୍ତି ସେମାନଙ୍କୁ ମାଂସାଶୀ ପ୍ରାଣୀ ବୋଲଯାଏ । ବିରାଡ଼ି ଦୁଧ, ମାଛ, ମୂଷା, ଅସରପା ଆଦି ଖାଏ । ଏଣୁ ଏହା ମାଂସାଶୀ । ସିଂହ, ବାଘ, ବିରାଡ଼ି ଏକ ଜାତୀୟ ପ୍ରାଣୀ । ସେଥିଲାଗି ବିରାଡ଼ିକୁ ବାଘର ମାଉସୀ ବୋଲି କହନ୍ତି ।



ବିରାଡ଼ି ଲମ୍ବରେ ପ୍ରାୟ ୪୫ ସେଣ୍ଟିମିଟର ଓ ଉଚ୍ଚରେ ପ୍ରାୟ ୩୦ ସେଣ୍ଟିମିଟର ହୁଏ । ନାନା ରଙ୍ଗର ବିରାଡ଼ି ଅଛନ୍ତି । କାହାର ରଙ୍ଗ ଧଳା, କିଏ କଳା, କିଏ ବାଦାମୀ ବା କାହାର ରଙ୍ଗ ଛିକ ଛିକ । ବିରାଡ଼ିର ଦେହ କୋମଳ ଲୋମରେ ଢଙ୍କା । ଏହାର ଲାଞ୍ଜ ସରୁ ଓ ଲମ୍ବା । ରାଗିଗଲେ ସେ ଲାଞ୍ଜକୁ ଫୁଲାଇ ଦିଏ । ତୁମ ଟାଙ୍କୁର ଉଠିବାରୁ ତାହା ବୋତଲ ସଫା କରିବା ବ୍ରସ୍ ପରି ଦେଖାଯାଏ ।

ମୁଣ୍ଡ—ବିରାଡ଼ିର ମୁଣ୍ଡ ଗୋଲ । ମୁଣ୍ଡର ଉପର ଆଡ଼କୁ ଦୁଇପାଖରେ ଦୁଇଟି କାନ ଅଛି । କାନ ଟୋଲ ଓ ଆଗଆଡ଼କୁ ସରୁ । ନାକ ସାନ । ସେଥିରେ ଦୁଇଟି ନାକପୁଡ଼ା ଅଛି । ବିରାଡ଼ିର ବାସନା ବାରିବା ଶକ୍ତି ପ୍ରବଳ । ସେଥିପାଇଁ ଦୁଧ, ଛେନା, ଘିଅ, ମାଛ, ଶୁଖୁଆ ଅଣ୍ଡା କେଉଁଠି ଅଛି ସେ ତାହା ଦୂରରୁ ଜାଣିପାରେ ଏବଂ ଯତ୍ନର ସହିତ ନ ରଖିଥିଲେ କେଉଁ ଫାଙ୍କରେ ଆସି ଖାଇଦେଇ ଯାଏ ।

ନାକଟଳକୁ ଦୁଇ କଡ଼ରେ ଲମ୍ବା ଝାଆଁସା ଲୋମ ଅଛି । ଲୋମର ସ୍ପର୍ଶ ଶକ୍ତି ପ୍ରବଳ । ଦୁଧ ବା ଘିଅ ଘଡ଼ା, ମାଟିଆ, ମୂଷା ଗାତ ଆଦିରେ ମୁଣ୍ଡ ପଶି ପାରିବ କି ନାହିଁ ତାହା ସେ ଲୋମଦ୍ୱାରା ଆଗ ମାପିନିଏ ଓ ତା'ପରେ ମୁଣ୍ଡ ଭର୍ତ୍ତି କରେ ।

**ଆଖି**—ବିରାଡ଼ିର ନାକ ଉପରକୁ ଦୁଇ ପାଖେ ଦୁଇଟି ଗୋଲ ଆଖି ଅଛି । ଅନ୍ଧାରରେ ବିରାଡ଼ିର ଆଖି ଜଳଜଳ ପର ଦିଶେ । ଦିନବେଳେ ବେଶୀ ଆଲୁଅ ଯୋଗୁଁ ଆଖି ତୋଳା ସ୍ଲେଟ



ବିରାଡ଼ିର ମୁଣ୍ଡ

ଆଖି ତାରା (ଦିନବେଳେ) ଆଖି ତାରା (ରାତିରେ)

ହୋଇଯାଏ । ଆମେ ଜାଣୁ ଦ୍ୱିପହର ବେଳକୁ ସୂର୍ଯ୍ୟ ମୁଣ୍ଡ ଉପରେ ଥିବାରୁ ସବୁଠାରୁ ବେଶୀ ଆଲୁଅ ହୁଏ । ଏତେବେଳେ ବିରାଡ଼ିର ଆଖି ତୋଳା ସବୁଠୁଁ ବେଶୀ ସ୍ଲେଟ ହୋଇଯିବାରୁ ଫଟା ଦାଗପରି ଦେଖାଯାଏ । ଆଲୁଅ କମିବା ସଙ୍ଗେ ସଙ୍ଗେ ତୋଳା ବଡ଼ ହେଉଥାଏ । ଅଧରାତିରେ ବିରାଡ଼ିର ତୋଳା ସବୁଠୁ ବଡ଼ ହୁଏ । ଆଲୁଅର ହ୍ରାସ ବୃଦ୍ଧି ସଙ୍ଗେ ଅଖିତୋଳା ବଡ଼ ସ୍ଲେଟ ହେଉ-ଥିବାରୁ ବିରାଡ଼ି ଅନ୍ଧାରରେ ଦେଖିପାରେ ଓ ଶିକାର କରିବାରେ ତାକୁ କୌଣସି ଅସୁବିଧା ହୁଏ ନାହିଁ ।

ଆମ ଆଖିରେ ପତା ଦୁଇଟି—ଉପର ପତା ଓ ତଳପତା । ବେଙ୍ଗ ଆଖିରେ ପତା ତିନୋଟି—ଉପର ପତା, ତଳପତା ଓ ଭୂଙ୍ଗସ୍ ପତା । ବାଘ ଆଖିରେ ସେହିପରି ପତା ତିନୋଟି । ଭୂଙ୍ଗସ୍ ପତା ସ୍ୱଚ୍ଛ ଓ ତାହା ଆଖିକୁ ବିପଦ ଆପଦରୁ ରକ୍ଷା କରେ ।

ଦାନ୍ତ—ମୁହଁ ଶେଷରେ ବାଘର ପାଟି ଅବସ୍ଥିତ । ବାଘ ପାଟିରେ ଦାନ୍ତ ଭରିଛି । ଏଗୁଡ଼ିକ ତିନୋଟି ପ୍ରକାରର; ଯଥା—ଗୁମୁଦାନ୍ତ ବା ଛେଦକ ଦାନ୍ତ, ଶ୍ୱାଦନ୍ତ ତିନୋଟି, ତା'ପଛକୁ ଗୋଟିଏ ଶ୍ୱାଦନ୍ତ ଓ ଚାରିଟି କଳ ଦାନ୍ତ ।



ବାଘର ମୁଣ୍ଡ

ତଳପାଟିର ପ୍ରତି ପାଖରେ ଗୁମୁଦାନ୍ତ ତିନୋଟି, ତା' ପଛକୁ ଗୋଟିଏ ଶ୍ୱାଦନ୍ତ ଓ ତିନୋଟି କଳଦାନ୍ତ । ଅନ୍ୟ କଥାରେ, ବାଘର ଉପର ପାଟିରେ ଛ'ଟି ଗୁମୁଦାନ୍ତ । ଦୁଇଟି ଶ୍ୱାଦନ୍ତ ଓ ଆଠଟି କଳଦାନ୍ତ; ତଳ ପାଟିରେ ଛଅଟି ଗୁମୁଦାନ୍ତ, ଦୁଇଟି ଶ୍ୱାଦନ୍ତ ଓ ଛଅଟି କଳଦାନ୍ତ । ଭିନ୍ନ ପ୍ରକାର ଦାନ୍ତର କାର୍ଯ୍ୟ ଭିନ୍ନ । ଗୁମୁଦାନ୍ତ ସାହାଯ୍ୟରେ ବାଘ ଖାଦ୍ୟ ପଦାର୍ଥକୁ ଛୋଟ ଛୋଟ ଖଣ୍ଡରେ କାଟିପକାଏ । ମୁନିଆଁ ଶ୍ୱାଦନ୍ତ ସାହାଯ୍ୟରେ ସେ ଆହାର-ଜୀବର ମାଂସକୁ ଓଟାରି ଛିଣ୍ଡାଇ ଦିଏ । କଳଦାନ୍ତ ଖାଦ୍ୟକୁ ଚୋବାଇବାରେ ସାହାଯ୍ୟ କରେ । ଗାଈର ପାଟିରେ ଶ୍ୱାଦନ୍ତ ନାହିଁ । କାରଣ, ଗାଈ ମାଂସାଶୀ ପ୍ରାଣୀ ନୁହେଁ ।

ଜିଭ—ବଗଡ଼ର ଜିଭ ଦେହର ଆକାରକୁ ଦୃଷ୍ଟି ବଡ଼ ଓ କଣ୍ଟିଆ । ଏଥିପାଇଁ ସେ ହାଡ଼ ଓ ମାଛକଣ୍ଟାରେ ଲାଗିଥିବା ମାଂସକୁ ବୃଷ୍ଟି ସଫାକରି ଖାଇପାରେ ।

**ଗୋଡ଼ ଓ ନଖ**—ବଗଡ଼ର ଚାରିଟି ଗୋଡ଼ । ଆଗଗୋଡ଼ ଦୁଇଟି ସିଧା ଓ ପଛ ଦୁଇ ଗୋଡ଼ ତୁଳନାରେ ଶ୍ରେଷ୍ଠ । ପଛଗୋଡ଼ ଆଣ୍ଠୁ ପାଖରୁ ଆଗକୁ ବଙ୍କା ଓ ଆଗ ଗୋଡ଼ଠାରୁ ଲମ୍ବା । ଏଥିପାଇଁ ସେ ସହଜରେ ଡେଇଁପାରେ । ଆଗ ପଞ୍ଜାରେ ପାଞ୍ଚଟି କରି ଆଙ୍ଗୁଳି




ବଗଡ଼ର (କ) ପଞ୍ଜା ଓ ନଖ, ଖ) ପାଦତଳ

ଓ ପଛ ପାଦରେ ଚାରିଟି କରି ଆଙ୍ଗୁଳି ଅଛି । ପ୍ରତି ଆଙ୍ଗୁଳି ଆଗରେ ଗୋଟିଏ କରି ତୀକ୍ଷ୍ଣ ଓ ବଙ୍କା ନଖ ଥାଏ । ଏଗୁଡ଼ିକ ପାଦ ଭିତରେ ଲୁଚି ରହିଥାଏ ଏବଂ ଆହାର-ଜୀବ ଶତ୍ରୁକୁ ଆକ୍ରମଣ କଲାବେଳେ ପଦାକୁ ବାହାରି ଆସେ । ଆହୁରି ମଧ୍ୟ ମୁନିଆଁ ନଖ ଯୋଗୁଁ ସେ ସହଜରେ ଗଛ ଓ କାନ୍ଥ ଉପରେ ଚଢ଼ିପାରେ । ପାଦତଳେ ମାଂସର ଗଦି ଥିବାରୁ ବଗଡ଼ ଚାଲିଲାବେଳେ ଆଦୌ ଶବ୍ଦ ହୁଏ ନାହିଁ ।

## ପ୍ରଶ୍ନ

୧ । ବିରାଡ଼ିର ଶରୀର ଗଠନ ବର୍ଣ୍ଣନ କର ।

୨ । ବିରାଡ଼ିର ଆଖି ବିଷୟରେ ଯାହା ଜାଣ ଲେଖ ।

୩ । ବିରାଡ଼ିର ଦାନ୍ତ ବିଭିନ୍ନ ପ୍ରକାରର କାହିଁକି ?

୪ । ବିରାଡ଼ି ଚାଲିଲାବେଳେ ଶବ୍ଦ ହୁଏ ନାହିଁ କାହିଁକି ?

୫ । ବିରାଡ଼ିର ମସ୍ତକର ବିଭିନ୍ନ ଅଂଶର ନାମ ଲେଖ ଓ ସେମାନଙ୍କର କାର୍ଯ୍ୟ ବର୍ଣ୍ଣନ କର ।

---

## (ଢ) ବତକ

ବତକ ବା ପାତିହଂସ ଗୋଟିଏ ପକ୍ଷୀ । ଏହାର ଦେହ ପରରେ ଢଙ୍କା । ପାତିହଂସ ଗୋଟିଏ ଗୃହପାଳିତ ପକ୍ଷୀ । ବତକ




ବତକ—୧—ଥଣ୍ଟ, ୨—ପାଦ

ତଥା ଅନ୍ୟ ପକ୍ଷୀମାନଙ୍କର ଦେହ ଦେଖିବାକୁ ଅନେକ ପରିମାଣରେ ଡଙ୍ଗା ପରି । ଦେହର ଏପରି ଗଠନ ହେତୁ ପକ୍ଷୀମାନେ ପବନ କାଟି

ସୁବିଧାରେ ଗତି କରିପାରନ୍ତି; ଆଉ ତେଣାରେ ପର ଲାଗିଥିବାରୁ ସେମାନେ ଉଡ଼ିପାରନ୍ତି । ବତକର ବେକଟି ସରୁଆ । ମୁଣ୍ଡର ଦୁଇପାଖେ ଦୁଇଟି ଆଖି ଓ ଦୁଇଟି କାନରନ୍ଧ୍ର ଅବସ୍ଥିତ ।

**ଥଣ୍ଟ**—ମୁଣ୍ଡ ଅଗକୁ ପକ୍ଷୀମାନଙ୍କର ଥଣ୍ଟ ଥାଏ । ପାତିହଂସର ଥଣ୍ଟ ଚେପ୍ଟା ଓ ଢ଼ଲଢ଼ଆ । ତଳ ଥଣ୍ଟ ଅପେକ୍ଷା ଉପର ଥଣ୍ଟ ଅଳ୍ପ ଲମ୍ବା । ଉପର ଥଣ୍ଟର ଉପର ଆଡ଼କୁ ଦୁଇଟି ରନ୍ଧ୍ର ଥାଏ । ଏଗୁଡ଼ିକ ତା'ର ନାକରନ୍ଧ୍ର । ପାତିହଂସର ଉପର ଓ ତଳଥଣ୍ଟର ଭିତର ପାଖର କଡ଼ରେ ମୁନିଆଁ ଦାନ୍ତପରିକା ବାହାରିଥାଏ । ପକ୍ଷୀମାନଙ୍କର ଦାନ୍ତ ନ ଥାଏ । ଏଗୁଡ଼ିକ ଥଣ୍ଟର ମୁନିଆଁ ଅଂଶ । ବତକ କାଦୁଅରେ ଥଣ୍ଟ ଗେଞ୍ଜି ଗେଣ୍ଡା, ପୋକ ଆଦି ଖାଏ । ସେଥିପାଇଁ ତା' ଥଣ୍ଟ ଚେପ୍ଟା । ଖାଦ୍ୟପଦାର୍ଥକୁ ପାଟି ଭିତରେ ରଖି ଚାପିଦେଲେ ଥଣ୍ଟ ଦୁଇପଟେ ପାଣି ଓ ପଙ୍କ ବାହାରିଯାଏ । ତା' ନ ହେଲେ ପାତିହଂସକୁ ଖାଦ୍ୟ ସହିତ ଅନେକ ପଙ୍କ ଖାଇବାକୁ ପଡ଼ୁଥାନ୍ତା । ପକ୍ଷୀମାନଙ୍କ ଥଣ୍ଟ ଭିତରେ ଜିଭ ଥାଏ । ପାତିହଂସର ଜିଭ ମୋଟା ।



ହଂସର ପାଦ ଓ ଥଣ୍ଟ

**ପାଦ**—ପାତିହଂସର ଗୋଡ଼ ଦୁଇଟି । ମାତ୍ର ଏଗୁଡ଼ିକ ଛୋଟ ହୋଇଥିବାରୁ ଦେହର ଭରସାପାଇଁ ସେ ଢଳ ଢଳ ଚାଲେ । ପ୍ରତି ପାଦରେ ଚାରିଟି ଆଙ୍ଗୁଳି ଅଛି । ଏଥିରୁ ତିନୋଟି ଆଗକୁ ଓ

ଗୋଟିଏ ପଡ଼କୁ । ଆଉ ନିଗୁଡ଼କ ଖଣ୍ଡଳା ଚମଡ଼ାର ପରସ୍ପର ସହିତ ସଂଯୁକ୍ତ । ଏଥିପାଇଁ ପାଣିହଂସ ସହଜରେ ପହଁରି ପାରେ । ଆହୁଲ ଯେପରି ଡଙ୍ଗା ବୁଲିବାରେ ସାହାଯ୍ୟ କରେ, ଗୋଡ଼ ସେହିପରି ପାଣିହଂସ ପାଇଁ ଆହୁଲର କାମ କରେ ।

ପର—ଅନ୍ୟପକ୍ଷୀମାନଙ୍କ ପରି ପାଣିହଂସର ଦୁଇଟି ଡେଣା । ଡେଣାରେ ପର ଖଞ୍ଜା ହୋଇଥାଏ । ଏହା ଉଡ଼ିବାରେ ସାହାଯ୍ୟ କରେ । ଲାଞ୍ଜରେ ମଧ୍ୟ ପର ଅଛି । ଡଙ୍ଗାରେ ମଙ୍ଗ ଯେପରି କାମ କରେ, ଉଡ଼ିଲାବେଳେ ଲାଞ୍ଜ ସେହିପରି ମଙ୍ଗର କାର୍ଯ୍ୟକରେ । ପାଣିହଂସର ଲାଞ୍ଜ ତଳକୁ ତୈଳଗ୍ରନ୍ଥି ଅଛି । ଥଣ୍ଟରେ ସେଥିରୁ ତେଲ ନେଇ ସେ ପରରେ ଲଗାଏ । ଏଥିପାଇଁ ପର ଚିକ୍କଣ ହୁଏ । ଥଣ୍ଟ ଓ ପାଦକୁ ଛାଡ଼ିଦେଲେ ପକ୍ଷୀର ଦେହ ପରରେ ଢଙ୍କା ଥାଏ । ଏହା ଦେହକୁ ଉଷ୍ମ ରଖେ ।

## ପ୍ରଶ୍ନ

୧ । ପାଣିହଂସର ଶରୀର ଗଠନ ଜଳରେ ରହିବା ଲାଗି କପରି ଉପଯୁକ୍ତ ତାହା ଲେଖ ।

୨ । ପାଣିହଂସ ଜଳ ତଳ ସ୍ଥଳେ ବାହ୍ରିକ ?

୩ । ଲାଞ୍ଜ ପାଣିହଂସର କ କାମରେ ଲାଗେ ?

---

## (ଛ) ପାର

ପାର ଗୋଟିଏ ପକ୍ଷୀ । ଏହା ଭଲ ପୋଷାମାନେ । ପାରମାନେ ଏକାଠି ରହିବାକୁ ଭଲ ପାଆନ୍ତି । ତୁମ୍ଭେମାନେ ଲକ୍ଷ୍ୟ କରିଥିବ ଦେଖିଥିବ ପାର ସବୁ ଏକାଠି ବସିଥାନ୍ତି । ଏମାନଙ୍କର ବର୍ଣ୍ଣ

ପାଙ୍ଖିଆ; କେବଳ ବେକ ଚଳର କିଛି ଅଂଶ ମୟୂରଚନ୍ଦ୍ରିକାର ରଙ୍ଗପରି ହୋଇଥାଏ । ଅନେକ ରଙ୍ଗର ପାରା ଅଛନ୍ତି, ଯଥା—ଧଳା, ବାଦାମୀ, ଛଉଛଉବା । ପାରାର ମୁଣ୍ଡ ଗୋଲ । ମୁଣ୍ଡ ଆଗକୁ ଥଣ୍ଟ ।




ପାରା ଦେହର ବିଭିନ୍ନ ଅଂଶ

୧—ନାକ, ୨—ଥଣ୍ଟ, ୩—ପିଠି, ୪—ଡେଣା, ୫—ଲାଞ୍ଜ, ୬—ପାଦର ଆଙ୍ଗୁଠି, ୭—ପେଟ, ୮—ଛାତି, ୯—ବେକ, ୧୦—କାନ, ୧୧—ଆଖି, ୧୨—ମୁଣ୍ଡର ଉପରଭାଗ ।

**ଥଣ୍ଟ**—ପାରାର ଥଣ୍ଟ ଗୋଜିଆ ଓ ଅଗ ଅଳ୍ପ ବଙ୍କା । ଥଣ୍ଟର ଏପରି ଗଠନ ଯୋଗୁଁ ସେ ସହଜରେ ସୋରିଷ, ଖୁଦ ଆଉ ଶସ୍ୟ ଖୁଣ୍ଟି ଖାଇପାରେ । ଶସ୍ୟ ସହିତ ସେ ଗୋଟି ଗୋଟି ବାଲି ଗୋଡ଼ ମଧ୍ୟ ଖାଏ । ଏସବୁ ସେ ଖାଇଥିବା ଖାଦ୍ୟକୁ ପେଟ

ଭିତରେ ପେଷିବାରେ ସାହାଯ୍ୟ କରନ୍ତି । ଥଣ୍ଟ ଉପର ଆଡ଼କୁ ଦୁଇଟି ରନ୍ଧ୍ର ଅଛି । ଏଗୁଡ଼ିକ ତା'ର ନାକରନ୍ଧ୍ର ।

**ଆଖି**—ପାରାର ମୁଣ୍ଡର ଦୁଇପଟେ ଦୁଇଟି ଆଖି । କେତେକ ଘର ପକ୍ଷୀମାନଙ୍କ ଆଖିରେ ତିନୋଟି ପତା । ଭିତରପ ପତାଟି ଅତି ପତଳା ଓ ସ୍ୱଚ୍ଛ । ପାରା ଆକାଶରେ ଉଡ଼େ । ସେତେବେଳେ ଧୂଳି, ପୋକ ଆଦି ତା'ର ଆଖିର କ୍ଷତ କରନ୍ତେ । ମାତ୍ର ଭିତରପ ପତା ଆଖିକୁ ଘୋଡ଼ାଇ ରଖିଥିବାରୁ ସେଭଳି ବିପଦରୁ ସେ ରକ୍ଷା ପାଏ । ପାରାର ଆଖି ତୀକ୍ଷ୍ଣ । ଆକାଶରେ ଉଡ଼ୁଥିଲେ ମଧ୍ୟ ଖୋରାକ ପ୍ରଭୃତି ବସ୍ତୁ ଦେଲେ ସେ ଦେଖିପାରି ଆସି ଝୁଙ୍କି ଖାଏ ।

ଆଖି ପଛକୁ ଦୁଇଟି ରନ୍ଧ୍ର ଅଛି । ଏଗୁଡ଼ିକ ତା'ର କାନ । ପର ଭିତରେ ଥିବାରୁ ପର ନ ଆଡ଼େଇଲେ ଏହା ଦିଶେ ନାହିଁ ।



ପାରାର ଥଣ୍ଟ ଓ ଆଖି



ପାରାର ପାଦ

**ପାଦ**—ଅନ୍ୟ ପକ୍ଷୀମାନଙ୍କ ପରି ପାରାର ପାଦ ଦୁଇଟି । ଏଗୁଡ଼ିକର ବର୍ଣ୍ଣ ଲାଲ । ପ୍ରତ୍ୟେକ ପାଦରେ ଚାରୋଟି କରି ଆଙ୍ଗୁଳି । ସେଥିରୁ ତିନୋଟି ଆଗଆଡ଼କୁ ଓ ଗୋଟିଏ ପଛଆଡ଼କୁ । ପ୍ରତ୍ୟେକ ଆଙ୍ଗୁଳି ଅଗରେ ନଖ ଅଛି । ପାରା ଗଛରେ ବସିପଡ଼ିବା ମାତ୍ରେ ଆଗ ଓ ପଛ ଆଙ୍ଗୁଳି ଆପେ ବଙ୍କା ହୋଇଯାଇ ଡାଳକୁ ଶକ୍ତଭାବେ ଧରି ନିଅନ୍ତି । ଏଥିପାଇଁ ସେ ଡାଳରେ ବସି ଶୋଇପଡ଼ିଲେ ମଧ୍ୟ ଖସି ପଡ଼େ ନାହିଁ ।

**ଡେଣା ଓ ଲାଞ୍ଜ**—ପାରର ଦେହ ପରରେ ଆବୃତ । ପର ଦେହର ଉତ୍ତାପକୁ ଧରି ରଖେ । ଖୁବ୍ ଉଚ୍ଚରେ ଉଡ଼ିଲେ ମଧ୍ୟ ପାରକୁ ଏଥିପାଇଁ ଶୀତ କରେ ନାହିଁ । ଅନ୍ୟ ପକ୍ଷୀଙ୍କ ପରି ପାରର ଡେଣା ଦୁଇଟି । ଦେହକୁ ସ୍ୱନ୍ଧି ଡେଣା ବଡ଼ ହୋଇଥିବାରୁ ପାର ଅତି ଉଚ୍ଚରେ ଉଡ଼ିପାରେ । ଡଙ୍ଗାରେ ମଙ୍ଗ ଯେପରି କାମକରେ ପାର ଆକାଶରେ ଉଡ଼ିଲା ବେଳେ ତା'ର ଲାଞ୍ଜ ସେହିପରି ଦିଗ ଠିକ୍ କରେ । ଦେହରେ ଥିବା ତୈଳଗ୍ରନ୍ଥିରୁ ତେଲ ବାହାରି ପରକୁ ଚିକ୍କଣ କରେ । ଏଥିଲାଗି ପାର ଉପରେ ପାଣି ପଡ଼ିଲେ ସେ ଓଦା ହୋଇଯାଏ ନାହିଁ ।

## ପ୍ରଶ୍ନ

୧ । ଗୋଟିଏ ପାରର ଥଣ୍ଟ ଓ ପାଦ ବର୍ଣ୍ଣନ କର ।

୨ । ପାରର ଶରୀରର ବିଭିନ୍ନ ଅଂଶର ନାମ ଲେଖ ଓ ସଂକ୍ଷେପରେ ସେମାନଙ୍କର କାର୍ଯ୍ୟ ବର୍ଣ୍ଣନ କର ।

୩ । ପାରର ପାଦ ଓ ଥଣ୍ଟ ହଂସର ପାଦ ଓ ଥଣ୍ଟଠାରୁ କିପରି ଓ କାହିଁକି ଭିନ୍ନ ?

## (ଜ) ବାନର

ବାନର ମେରୁଦଣ୍ଡୀ ଓ ସ୍ତନ୍ୟପାୟୀ ପ୍ରାଣୀ । ଆମ ଓଡ଼ିଶାରେ ଦୁଇ ଜାତ ବାନର ଦେଖାଯାନ୍ତି; ଯଥା—ପାତ ଓ ହନୁ । ମନୁଷ୍ୟମାନଙ୍କ ସହିତ ବାନରମାନଙ୍କର କେତେକ ସାମଞ୍ଜସ୍ୟ ଦେଖାଯାଏ ଶିମ୍ପାଞ୍ଜି, ଗରିଲା, ଓରାଂଓଟାନ୍ ଆଦି କେତେକ ଜାତ ବାନର ଆଫ୍ରିକା ଓ ମାଳୟର ଜଙ୍ଗଲମାନଙ୍କରେ

ବାସ କରନ୍ତି । ମନୁଷ୍ୟମାନଙ୍କ ସହିତ ଏମାନଙ୍କର ସାମଞ୍ଜସ୍ୟ ଅଧିକ ବୋଲି ଏମାନଙ୍କୁ ବଣ-ମଣିଷ କୁହାଯାଏ । ବାନରମାନଙ୍କର ଦେହ ଲୋମରେ ଭରା । ସେମାନଙ୍କର ଲାଞ୍ଜ ଅଛି; ମଣିଷର ତାହା ନାହିଁ ।



ଲାଲ ମାଙ୍କଡ଼

ମସ୍ତିଷ୍କ—ହନୁ ବା ଗାଣର ମୁଣ୍ଡ ମନୁଷ୍ୟ ମୁଣ୍ଡଠାରୁ ଛୋଟ; ମାତ୍ର ସେମାନଙ୍କର ମୁଣ୍ଡର ଗଠନ ଅନେକ ପରିମାଣରେ ମନୁଷ୍ୟ ମୁଣ୍ଡର ଗଠନ ପରି । ବାନରର ଆଖି ମନୁଷ୍ୟ ଆଖି ପରି କୋଟର ଭିତରେ ଥାଏ । ଆମ ଆଖି ପରି ବାନର ଆଖିରେ ଦୁଇଟି ଆଖିପତା

ଅଛୁ ଓ ପ୍ରକ ଅଙ୍ଗିପତାରେ ଲୋମ ଅଛୁ । ବାନରର ନାକର ଠେନି ଆମ ନାକ ପର ଦେଖିଲ ମଧ୍ୟ ଚେପ୍ଟା ।

ଦାନ୍ତ—ବାନରର ପାଟିରେ ଦାନ୍ତ ବତିଶଟି; ଉପର ପାଟିରେ ଷୋଳଟି ଓ ତଳ ପାଟିରେ ଷୋଳଟି । ପ୍ରତି ପାଖରେ ଆଠଟି କରି ଦାନ୍ତ । ଏଗୁଡ଼ିକ ଚାରି ପ୍ରକାର; ଯଥା ଗ୍ରମୂଦାନ୍ତ ଶ୍ୱାଦନ୍ତ, ଚର୍ବଣ ଦାନ୍ତ ଓ ପେଷଣ ଦାନ୍ତ । ପ୍ରତିପାଖରେ ଗ୍ରମୂଦାନ୍ତ ଦୁଇଟି, ଶ୍ୱାଦନ୍ତ ଗୋଟିଏ, ଚର୍ବଣ ଦାନ୍ତ ଦୁଇଟି ଓ ପେଷଣ ଦାନ୍ତ ତିନୋଟି । ଖାଦ୍ୟକୁ ଟିକିଟିକି କରି କାଟି ପକାଇବା ଗ୍ରମୂ ଦାନ୍ତର କାର୍ଯ୍ୟ । ଶ୍ୱାଦନ୍ତରେ ଅନ୍ୟ ଜନ୍ତୁର ମାଂସ ଓଟାରି ଛିଆଯାଏ । ବାନର ମାଂସାଶୀ ଜୀବ ନୁହେଁ । ସେ ଫଳ, କନ୍ଦ, ଜଙ୍ଗଲପତ୍ର ଆଦି ଖାଏ । ଏଣୁ ତା'ର ଶ୍ୱାଦନ୍ତ ସାନ ଓ ତାହା ଚର୍ବଣ ଦାନ୍ତର କାମ କରେ । ଚର୍ବଣ ଦାନ୍ତର କାମ ଖାଦ୍ୟକୁ ଚୋବାଇବା ଓ ପେଷଣ ଦାନ୍ତର କାମ ଖାଦ୍ୟକୁ ପେଷି ଗୁଣ୍ଡ କରିବା । ତୁମେ ଜାଣିଥିବ ଯେ ଜଣେ ପୂର୍ଣ୍ଣବୟସ୍କ ଲୋକର ପାଟିରେ ବତିଶଟି ଦାନ୍ତ ଥାଏ ଓ ସେଗୁଡ଼ିକ ବାନରର ଦାନ୍ତ ପରି ।

ବାନରମାନଙ୍କର ଜଙ୍ଘ ମଣିଷର ଜଙ୍ଘ ପରି ଏବଂ ତାହା ତଳ ପାଟିର ପଛକୁ ଲାଗିଥାଏ ।

ହାତ ଓ ଗୋଡ଼—ବାନରମାନେ ସାଧାରଣତଃ ବୃକ୍ଷବାସୀ । ଏଣୁ ସେମାନଙ୍କର ଗୋଡ଼ ଓ ହାତ ଉଭୟ ଗଛର ଡାଳକୁ ଧରିବାରେ ବ୍ୟବହୃତ ହୁଏ । ପ୍ରତି ହାତ ଓ ଗୋଡ଼ରେ ପାଞ୍ଚଟି କରି ଆଙ୍ଗୁଳି ଅଛି । ହାତ ଓ ଗୋଡ଼ ଉଭୟରେ ବୁଢ଼ା ଆଙ୍ଗୁଳି ଅନ୍ୟ ଚାରୋଟି ଆଙ୍ଗୁଳିର ସାମନାସାମନି ଥିବାରୁ ବାନରମାନେ ଡାଳକୁ ଦୃଢ଼ଭାବେ ଧରି ପାରନ୍ତି । ଚଲେ ବୁଲିବା-ବେଳେ ସେମାନେ ହାତ ଓ ଗୋଡ଼ ବ୍ୟବହାର କରନ୍ତି । ମାତ୍ର

ମନୁଷ୍ୟମାନେ ସିଧା ଚାଲନ୍ତି ଓ ଗୋଡ଼ରେ ଚାଲନ୍ତି । ମଣିଷ ବୃକ୍ଷବାସୀ ହୋଇ ନ ଥିବାରୁ ତାର ଗୋଡ଼ର ବୁଢ଼ାଆଙ୍ଗୁଠି ଅନ୍ୟ ଚାରି ଆଙ୍ଗୁଠିର ସାମନାରେ ଅବସ୍ଥିତ ନୁହେଁ, ତେଣୁ ସେ ବାନର-ମାନଙ୍କ ପରି ଗୋଡ଼ ସାହାଯ୍ୟରେ ଗଛରେ ଲଟକି ପାରେ ନାହିଁ । ବାନରମାନଙ୍କର ଆଙ୍ଗୁଠିର ନଖର ଆକାର ମନୁଷ୍ୟର ନଖ ପରି ।

## ପ୍ରଶ୍ନ

୧ । ମନୁଷ୍ୟ ସହିତ ବାନରର କେଉଁ କେଉଁ ବିଷୟରେ ସାଦୃଶ୍ୟ ଅଛି ତାହା ଲେଖ ।

୨ । ବାନରର ମସ୍ତକକୁ ମଣିଷର ମସ୍ତକ ସହିତ ତୁଳନା କର ।

୩ । ବାନରର ବାସ ବିଷୟରେ ସଂକ୍ଷିପ୍ତ ବିବରଣୀ ଦିଅ ।

## (୪) ପିମ୍ପୁଡ଼ି

ପିମ୍ପୁଡ଼ି ଗୋଟିଏ କୀଟ । ଏମାନେ ଦଳବଦ୍ଧ ହୋଇ ବାସ କରନ୍ତି ଓ ଅତ୍ୟନ୍ତ ପରିଶ୍ରମୀ । ଅନ୍ୟ କୀଟମାନଙ୍କ ପରି ପିମ୍ପୁଡ଼ିର ଦେହକୁ ପ୍ରଧାନତଃ ତିନୋଟି ଭାଗରେ ବିଭକ୍ତ କରାଯାଇପାରେ; ଯଥା—ଶିର ବା ମୁଣ୍ଡ, ବକ୍ଷ ଓ ଉଦର । ଏହାର ମୁଣ୍ଡରେ ଦୁଇଟି ଶୁଣ୍ଢ । ଶୁଣ୍ଢ ସାହାଯ୍ୟରେ ଏମାନେ ନିଜ ନିଜ ଭିତରେ 'କଥା' ହୁଅନ୍ତି ଓ କୌଣସି ଦ୍ରବ୍ୟର ଅବସ୍ଥିତି ଅନୁଭବ କରନ୍ତି । ବକ୍ଷର ତଳପଟୁ ଦୁଇପଟେ ଛଅଟି ଗୋଡ଼ ବାହାରିଥାଏ ।

**ସମାଜ ଜୀବନ**—ନିଜ ନିଜ ଭିତରେ ଦାମ ବାନ୍ଧି ମିଳି-ମିଶି ରହୁଥିବାରୁ ସମାଜ ଜୀବନ କହନ୍ତି । ମଣିଷମାନଙ୍କ ମଧ୍ୟରେ ଭିନ୍ନ ଧରଣର ସମାଜ ଜୀବନ ଦେଖାଯାଏ । ବଡ଼ ଆଶ୍ଚର୍ଯ୍ୟର କଥା, କ୍ଷୁଦ୍ର କୀଟ ପିମ୍ପୁଡ଼ିମାନଙ୍କର ମଧ୍ୟ ସମାଜ ଜୀବନ ଉନ୍ନତ ଧରଣର ।

ତୁମ୍ଭେମାନେ ପିମ୍ପୁଡ଼ିମାନଙ୍କର ଘର ଦେଖିଥିବ । ସେମାନେ ଭୂମିରେ ଗାତ କରି ରହନ୍ତି, ନଇତବା ଗଛରେ ବସା କରନ୍ତି । ଆମ୍ବଡାଳରେ



କର୍ମୀ ପିମ୍ପୁଡ଼ି

କାଇ ବସା କାଇନ୍ତି । ତୁମେ ଯଦି ଭଲ କରି ଲକ୍ଷ କର, ତେବେ ଦେଖିବ ଯେ ପିମ୍ପୁଡ଼ି ଗାତରୁ ଯେତେ ପିମ୍ପୁଡ଼ି ବାହାରକୁ ଯାନ୍ତି ବା ଭିତରକୁ ପଶନ୍ତି ସେ ସବୁ ପ୍ରଧାନତଃ ଦୁଇ ପ୍ରକାର । ଗୋଟିଏ ପ୍ରକାର ଧୀର ଓ କାମୁଡ଼ନ୍ତି ନାହିଁ । ଅନ୍ୟପ୍ରକାରର ପିମ୍ପୁଡ଼ି-ମାନେ ବିପଦର ସୂଚନା ପାଇଲା ମାତ୍ରେ କାମୁଡ଼ିବାକୁ ଦୌଡ଼ି ଆସନ୍ତି । ଏମାନଙ୍କୁ ସୈନିକ ପିମ୍ପୁଡ଼ି କୁହାଯାଏ ଓ ଧୀର ପିମ୍ପୁଡ଼ିଗୁଡ଼ିକୁ ଶ୍ରମିକ ପିମ୍ପୁଡ଼ି କହନ୍ତି । ସୈନିକ ପିମ୍ପୁଡ଼ିମାନଙ୍କର ମୁଣ୍ଡ ଓ ଦାନ୍ତ ବଡ଼ । ରାଣୀ ପିମ୍ପୁଡ଼ି



ସ୍ତ୍ରୀ ପିମ୍ପୁଡ଼ି

ଗାତ ଭିତରେ ଥାଏ । ତା'ର ଉଦର ବଡ଼ ଓ ଅଣ୍ଡାର ଏକ ଖଣି କହିଲେ ଭୁଲ ହେବ ନାହିଁ । ରାଣୀର କାମ

କେବଳ ଅଣ୍ଡା ଦେବା । ଶ୍ରମିକ ପିମ୍ପୁଡ଼ିଙ୍କ କାମ ଅଣ୍ଡାରୁ ଫୁଟିଥିବା ଛୁଆଙ୍କର ଯତ୍ନ ନେବା, ଖାଦ୍ୟ ସଂଗ୍ରହ କରିବା, ରାଣୀ ଓ ସୈନିକମାନଙ୍କୁ ଖୁଆଇବା ଇତ୍ୟାଦି । ସୈନିକମାନଙ୍କର କାମ ପିମ୍ପୁଡ଼ି ବସାକୁ, ରାଣୀ ଶ୍ରମିକମାନଙ୍କୁ ବିପଦ ଆପଦରୁ ରକ୍ଷା କରିବା । ରାଣୀ ପିମ୍ପୁଡ଼ି ଦେଇଥିବା ଅଣ୍ଡାରୁ ଯେଉଁ ଛୁଆ ଫୁଟନ୍ତି-



ପୁରୁଷ ପିମ୍ପୁଡ଼ି

ସେମାନେ ବଡ଼ ହେଲେ ସେଥିରୁ ଅଧିକାଂଶ ଶ୍ରମିକ ଓ କେତେକ ସୈନିକ ହୁଅନ୍ତି । ଯେତେବେଳେ ପିମ୍ପୁଡ଼ି ବସାରେ ପିମ୍ପୁଡ଼ିଙ୍କ ସଂଖ୍ୟା ବଢ଼ି ବଢ଼ି ଜାଗା ନିଅଣ୍ଟ ହୁଏ, ସେତେବେଳେ ରାଣୀ ପିମ୍ପୁଡ଼ିର ଗୁଡ଼ିଏ ଅଣ୍ଡାରୁ ଯେଉଁ ଲର୍ଭ ବାହାରନ୍ତି ସେମାନେ ବଡ଼ ହେଲେ ତାଙ୍କ ପିଠିରୁ ଡେଣା ବାହାରେ ଓ ସେମାନେ ମାଈ ଓ ଅଣ୍ଡିରା ପିମ୍ପୁଡ଼ି ହୁଅନ୍ତି ।

ଦିନେ ଏଇ ଡେଣାଲଗା ମାଈ ଓ ଅଣ୍ଡିରା ପିମ୍ପୁଡ଼ି ବସାରୁ ବାହାରି ଉଡ଼ି ଯାଆନ୍ତି । ଆକାଶରେ ସେମାନଙ୍କର ବାହାଘର ହୁଏ । ତା'ପରେ

ଅଣ୍ଡିସ ପିମ୍ପୁଡ଼ି ମରିଯାଏ । ମାଈ ପିମ୍ପୁଡ଼ି ଡେଣା ଝାଡ଼ିଦେଲା ପରେ ତା'ର ଡେଣା ଖସିପଡ଼େ । ସେ କୌଣସି ଗାତ ଦେଖି ତା'ଭିତରେ ଘେଞ୍ଚ ବସାଟିଏ କରି ଅଣ୍ଡା ଦିଏ । ଅଣ୍ଡାରୁ ଯେଉଁ ଳର୍ଭା ବାହାରନ୍ତି ସେ ତାଙ୍କର ଯତ୍ନ ନିଏ । ଏମାନେ ବଡ଼ହୋଇ ହୁଅନ୍ତି ଶ୍ରମିକ ଓ ସୈନିକ ପିମ୍ପୁଡ଼ି । ଏଣିକ ମା' ହୁଏ 'ରାଣୀ', ତାର ଯତ୍ନ ନିଅନ୍ତି ତା'ର ବଢ଼ିଲା ପିଲାଏ—ଶ୍ରମିକ ଓ ସୈନିକ ।

ଶ୍ରମିକ ପିମ୍ପୁଡ଼ିମାନଙ୍କର କଷ୍ଟ-ସହିଷ୍ଣୁତା ଓ ସହଯୋଗ ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ଗୋଟିଏ ଶ୍ରମିକ କୌଣସି ଭାରି ଖାଦ୍ୟ ପଦାର୍ଥକୁ ବୋହି ନ ପାରିଲେ ତତ୍‌କ୍ଷଣାତ୍ ସେମାନଙ୍କ ମଧ୍ୟରୁ କେତେଜଣ ଯାଇ ଅନ୍ୟ ଶ୍ରମିକମାନଙ୍କୁ ଖବର ଦିଅନ୍ତି । ଅଳ୍ପ ସମୟ ମଧ୍ୟରେ ବହୁତ ଗୁଡ଼ାଏ ଶ୍ରମିକପିମ୍ପୁଡ଼ି ଜମା ହୋଇ ଖାଦ୍ୟ ପଦାର୍ଥକୁ ବୋହିନେଇ ଚାଲିଯାନ୍ତି ।

## ପ୍ରଶ୍ନ

୧ । ପିମ୍ପୁଡ଼ିମାନଙ୍କର ସମାଜ-ଜୀବନ ବିଷୟରେ ଏକ ଛୋଟ ପ୍ରବନ୍ଧ ଲେଖ ।

୨ । ପିମ୍ପୁଡ଼ି ଗାତ ଭିତରେ କେଉଁ ପ୍ରକାର ପିମ୍ପୁଡ଼ି ଥାନ୍ତି ? ସେମାନଙ୍କର କାର୍ଯ୍ୟ କଅଣ ?

---

## (ଖ) ଉଇ

ପିମ୍ପୁଡ଼ି ପରି ଉଇ ଗୋଟିଏ ଜୀବ । ଉଇମାନଙ୍କର ଉଚ୍ଚ ସମାଜ ଜୀବନ ଓ ସଂଗଠନ ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ହୁଙ୍କା ଉଇମାନଙ୍କର ଘର । ହୁଙ୍କାର କିଛି ଅଂଶ ମାଟି ଉପରେ ଓ କିଛି ଅଂଶ ମାଟି ଭିତରେ ଥାଏ ।

ଉଇ ହୁଙ୍କାରେ ମାଟିତଳ ଅଂଶରେ ଗୋଟିଏ ଘର ଅଛି । ଏହା ରାଣୀମହଲ । ସ୍ୱା'ହତରେ ଉଇରାଣୀ ଓ ଉଇରଜା ଥାନ୍ତି । ଉଇରଜା ଆକାରରେ ରାଣୀଠାରୁ ବହୁତ ଶ୍ରେଷ୍ଠ । ରାଣୀମହଲ ପାଖରେ ଗୋଟିଏ ଉଦ୍ୟାନ ଓ ଅନ୍ୟାନ୍ୟ ଅନେକ କୋଠରୀ ଥାଏ । ଅନବରତ ରାଣୀକୁ ଉଇସୈନ୍ୟ ଜଗି ରହିଥାନ୍ତି, ଆଉ ଉଇଶ୍ରମିକ, ରାଣୀ ଓ ରଜାଙ୍କର ସେବା କରନ୍ତି । ଉଇରାଣୀର କାମ ହେଲା, କେବଳ ଅଣ୍ଡା ଦେବା । ତା' ଦେହଟି ବଡ଼ ଓ ଅଣ୍ଡାରେ ଭରା ।



୧—ଉଇହୁଙ୍କା, ୨—ଉଇ ରାଣୀ ୩—ଝୁଡ଼ପୋକ,
୪—ଉଇ ସୈନିକ, ୫—ଉଇ ଶ୍ରମିକ ।

ତେଣୁ ସେ ଚଳବୁଲ କରିପାରେ ନାହିଁ । ଶ୍ରମିକମାନେ ଖାଦ୍ୟ ନେଇ ରାଣୀ ଓ ରଜାଙ୍କୁ ଖୁଆନ୍ତି । ଉଇରାଣୀ ଅଣ୍ଡାଦେଲା ମାତ୍ରେ ଶ୍ରମିକମାନେ ସେଗୁଡ଼ିକୁ ପାଟିରେ ବୋହିନେଇ ଶିଶୁମହଲକୁ ନେଇଯାନ୍ତି ।

ସେମାନଙ୍କର ଯତ୍ନ ନିଅନ୍ତି । ଶ୍ରମିକ ଓ ସୈନିକ ଉଇମାନେ ଅଣ୍ଡା ଦିଅନ୍ତି ନାହିଁ ଓ ସେମାନଙ୍କର ଆଖି ନ ଥାଏ କି ଡେଣା ନ ଥାଏ । ଉଇମାନଙ୍କର ଉଦ୍ୟାନରେ ଏକ ପ୍ରକାର ଛତୁ ସୃଷ୍ଟ ହୁଏ । ସ୍ୱା'କୁ ଚରନ୍ତି ଶ୍ରମିକ ଉଇମାନେ । ଅଣ୍ଡାରୁ ଫୁଟିଥିବା ଛୁଆଙ୍କୁ ଶ୍ରମିକମାନେ ଛତୁ ଉଦ୍ୟାନରୁ ଛତୁକୋରକ ଆଣି ଚୂଅନ୍ତି ।

ଶ୍ରମିକ ଉଇମାନଙ୍କର କାମ ବିବିଧ ପ୍ରକାରର । ସେମାନେ ଏକାଧାରରେ ଧାଈ, ମାଳୀ, ଶ୍ରମିକ, ଶିଳ୍ପୀ ଓ ଇଞ୍ଜିନିୟର । ଉଇ ହୁଙ୍କାରୁ ଯାକେ ଭାଙ୍ଗିଗଲେ, ସାଙ୍ଗେ ସାଙ୍ଗେ ଶ୍ରମିକମାନେ ଆସି ମରାମତି କାମରେ ଲାଗିଯାନ୍ତି ଓ ଅଳ୍ପସମୟ ମଧ୍ୟରେ ମରାମତି କରି ଦିଅନ୍ତି । ଆହୁରି ମଧ୍ୟ ଏମାନେ ପବନ ଓ ବର୍ଷାରେ ବିଗିଡ଼ି ନଯିବା ରଖି ହୁଙ୍କାକୁ ଏପରିଭାବେ ତୋଳିଥାନ୍ତି ଯେ ପବନ, ବର୍ଷା ଆଦି ସହଜରେ ତା'ର କ୍ଷତିକରି ପାରେ ନାହିଁ । ତୁମ୍ଭେମାନେ ଲକ୍ଷ୍ୟ କରିଥିବ, ଉଇହୁଙ୍କାର ଉପର ଅଂଶ ପତଳା । ବାୟୁ ଚଳାଚଳ ଭଲଭାବେ ହୋଇପାରିବା ପାଇଁ ସେପରି ଭାବେ ତିଆରି ହୋଇଥାଏ । ସୈନିକ ଉଇମାନେ କେବଳ ସେ ରଜାରାଣୀଙ୍କୁ ଜଗିଥାନ୍ତି ତା' ନୁହେଁ, ସେମାନେ ଶ୍ରମିକମାନଙ୍କୁ କାମ କରନ୍ତି ଓ ସେମାନଙ୍କୁ ବିପଦଆପଦରୁ ରକ୍ଷା କରନ୍ତି । ଉଇ ସୈନିକମାନଙ୍କର ଶ୍ରମିକମାନଙ୍କ ତୁଳନାରେ ମୁଣ୍ଡ ଓ ଦାନ୍ତ ବଡ଼ । ଗୋଟିଏ ଗୋଟିଏ ଉଇ ହୁଙ୍କାରେ କୋଟିଏ ଯାଏ ଉଇ ଥାନ୍ତି । ସେଥିରୁ ବେଶୀ ଭାଗ ଶ୍ରମିକ, ଅଳ୍ପ ସୈନ୍ୟ, ଜଣେ ରାଣୀ ଓ ଗୋଟିଏ ରଜା ।

ବର୍ଷା ଦିନେ ହୁଙ୍କାରୁ ଝିଙ୍କାପୋକ ବାହାରିବାର ଦେଖିଥିବ । ବର୍ଷାଋତୁରେ ବର୍ଷା ହେବା ଆଗରୁ ଉଇରାଣୀ ଯେଉଁ ଅଣ୍ଡା ଦିଏ ସେଥିରୁ କେତେକ ଛୁଆ ହୁଅନ୍ତି, ସେମାନଙ୍କର ଆଖି ଥାଏ ଓ ବଡ଼

ହେଲେ ସେମାନଙ୍କ ପିଠିରୁ ଦୁଇଟି ଡେଣା ବାହାରେ । ଏମାନଙ୍କୁ ଝଡ଼ପୋକ କହନ୍ତି । ଝଡ଼ପୋକ ଦୁଇ ପ୍ରକାର, ଅଣ୍ଡିରା ଓ ମାଈ । ଏମାନେ ସୁବିଧାରେ ବାହାରି ପାରିବା ଲାଗି ଶ୍ରମିକମାନେ ହୁଙ୍କାରେ ସାନ ସାନ କଣା କରି ଦିଅନ୍ତି । ଝଡ଼ପୋକମାନେ ଉଇହୁଙ୍କାରୁ ବାହାରି କିଛି ସମୟ ଉଡ଼ି ବୁଲନ୍ତି । ତା’ପରେ ତଳକୁ ଓହ୍ଲାଇ ଆସନ୍ତି ଓ ସେମାନଙ୍କର ଡେଣା ଖସି ପଡ଼େ । ବର୍ତ୍ତମାନ ଋଷସ୍ତ୍ରିନ ମାଈ, ଅଣ୍ଡିରା ଉଇ ଯୋଡ଼ ଯୋଡ଼ ହୋଇ କୌଣସି ଗାତ ଦେଖି ରହନ୍ତି । ମାଈ ଉଇ କେତେ ଅଣ୍ଡା ଦିଏ । ସେଥିରୁ ଛୁଆ ଫୁଟିଲେ ସେ ସେମାନଙ୍କର ଯତ୍ନ ନିଏ । ଏମାନେ ବଡ଼ ହୋଇ ହୁଅନ୍ତି ଶ୍ରମିକ ଓ ସୈନିକ ଉଇ । ଏଣିକି ଶ୍ରମିକମାନେ ବାପ ମା’ଙ୍କ ପାଇଁ ତିଆରି କରନ୍ତି ହୁଙ୍କା । ପିଲାଙ୍କ ସଙ୍ଗରେ ଅଣ୍ଡିରା ଓ ମାଈ ଉଇ ରଜା-ରାଣୀ ପରି ରହନ୍ତି ।

### ପ୍ରଶ୍ନ

୧ । ଉଇମାନଙ୍କର ସମାଜ-ଜୀବନ ବର୍ଣ୍ଣନା କର ।

୨ । ଶ୍ରମିକ ଉଇ କି କି କାର୍ଯ୍ୟ କରନ୍ତି ? ସୈନିକ ଉଇମାନଙ୍କର କାର୍ଯ୍ୟ କଅଣ ?

୩ । ଉଇହୁଙ୍କା ସମ୍ବନ୍ଧରେ ଗୋଟିଏ ପ୍ରବନ୍ଧ ଲେଖ ।

---

## (୫) ମହୁମାଛି

ପିମ୍ପୁଡ଼ି ଓ ଉଇପରି ମହୁମାଛି ଗୋଟିଏ ଜନ୍ତୁ । ତୁମ୍ଭେମାନେ ଗଛଡାଳରେ ବା ଘର ଛାତରେ ମହୁଫେଣା ଦେଖିଥିବ । ମହୁଫେଣା ମହୁମାଛିମାନଙ୍କର ଘର । ଗୋଟିଏ ମହୁଫେଣାରେ ଷାଠିଏ ହଜାର ଯାଏଁ ମହୁମାଛି ଥାଆନ୍ତି । ଏଥିରେ କେବଳ ଗୋଟିଏ ରାଣୀ

ମହୁମାଛି ଓ ଅନ୍ୟ ସମସ୍ତେ ଶ୍ରମିକ ମହୁମାଛି । ସମୟ ସମୟରେ ଅଣ୍ଡିରା ମହୁମାଛି ଥାଆନ୍ତି । ସବୁ ମହୁମାଛିଙ୍କର ଚାରିଟିକର ଡେଣା । ଶ୍ରମିକ ମହୁମାଛି ସବୁଠୁ ସାନ ହୁଅନ୍ତି ଓ ବଞ୍ଚିବା ପାଇଁ ସେମାନଙ୍କର ନାହୁଡ଼ ଥାଏ । ଏମାନଙ୍କ ମଧ୍ୟରେ ଅଣ୍ଡିରା ମହୁମାଛି ଶ୍ରମିକ ମହୁମାଛି ଅପେକ୍ଷା ମୋଟାଳିଆ । ରାଣୀ ମହୁମାଛିର ପେଟ ବଡ଼ ।



ମହୁଫେଣା

ପିମ୍ପୁଡ଼ି ଓ ଉଇ ପରି ମହୁମାଛିମାନଙ୍କ ମଧ୍ୟରେ ସମାଜ ଜୀବନ ଦେଖିବାକୁ ମିଳେ । ରାଣୀ ମହୁମାଛିର କାମ ହେଲା, ମହୁଫେଣାରେ ରହି କେବଳ ଅଣ୍ଡା ଦେବା । ଶ୍ରମିକ ମହୁମାଛିମାନେ ଅଣ୍ଡା ଦିଅନ୍ତି ନାହିଁ । କଠିନ ପରିଶ୍ରମ କରିବା ସେମାନଙ୍କର ବ୍ରତ । ମହୁଫେଣାରେ

ଶ୍ରମିକ ମହୁମାଛିମାନଙ୍କର କାମ ନାନା ଧରଣରେ । କେହି ଫେଣା ଅନ୍ବେଷଣ କଲେ ସେମାନେ ଯାଇ ତାକୁ ନାହୁଡ଼ରେ ବନ୍ଧନ୍ତି; ଗୁଡ଼ାଏ ଫେଣାକୁ ଜଗି ରହନ୍ତି, କେତେକ ଶ୍ରମିକ ବାହାରିଯାନ୍ତି ଫୁଲର ସନ୍ଧାନରେ । ମହୁମାଛିମାନେ ଫୁଲରୁ ମଧୁ ଓ ରେଣୁ ଖାଇ



୧ ୨ ୩

ରାଣୀ ମହୁମାଛି    ଅଣ୍ଡିର ମହୁମାଛି    ଶ୍ରମିକ ମହୁମାଛି

ମହୁଫେଣାକୁ ଫେରି ଆସନ୍ତି । ମହୁଫେଣାରେ ମହୁ ସାଇତି ରଖନ୍ତି ଓ ଉଦରରୁ ମହମ ବାହାର କରି ସେଥିରେ ଫେଣା ତିଆରି କରନ୍ତି । ରାଣୀ ଦେଇଥିବା ଅଣ୍ଡାରୁ ଯେଉଁ ଛୁଆ ଫୁଟେ ତାକୁ ଲର୍ଭି ବୋଲାଯାଏ ।

ଶ୍ରମିକମାନେ ଏକପ୍ରକାର ଜେଲି ପ୍ରସ୍ତୁତ କରି ଲର୍ଭିମାନଙ୍କୁ ଖୁଆନ୍ତି । ଏହା ଖାଇ କେତେଦିନ ବଢ଼ିବା ପରେ ସେମାନଙ୍କୁ ମହୁ ଖାଇବାକୁ ଦିଆଯାଏ । ଲର୍ଭିମାନେ ବଡ଼ ହେଲେ ହୁଅନ୍ତି ଶ୍ରମିକ । ଯେତେବେଳେ ମହୁଫେଣାରେ ଶ୍ରମିକମାନଙ୍କ ପାଇଁ ସ୍ଥାନର ଅଭାବ ହୁଏ, ସେତେବେଳେ ଅନ୍ୟ ଏକ ସ୍ଥାନରେ ଯାଇ ମହୁଫେଣା କରିବା ଆବଶ୍ୟକ ପଡ଼େ । ଏତେବେଳେ ଶ୍ରମିକମାନେ କେତେକ ଲର୍ଭିକୁ ମହୁ ନ ଦେଇ ଖାଲି ଜେଲି ଖାଇବାକୁ ଦିଅନ୍ତି । ଏମାନେ ବଡ଼ ହୋଇ ରାଣୀ ମହୁମାଛି ହୁଅନ୍ତି । ଏ ସମୟରେ କେତେଗୁଡ଼ାଏ ଅଣ୍ଡିର ମହୁମାଛି ମଧ୍ୟ ଜନ୍ମ ହୁଅନ୍ତି । ଖରାଦିନେ ଭଲପାଗ ଦେଖି

ଗୋଟିଏ ମାଈ ମହୁମାଛି ଝୁଡ଼ିଏ ଶ୍ରମିକଙ୍କୁ ସାଙ୍ଗରେ ଧରି ଅନ୍ୟ ଏକ ଗଛକୁ ଉଡ଼ିଯାଏ । ଶ୍ରମିକମାନେ ସେଠି ଫେଣା ତିଆରି କରି ନୂତନ ବସତି ଆରମ୍ଭ କରନ୍ତି । ମହୁଫେଣାର ଗଠନ କୌଶଳ ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ ।

### ପ୍ରଶ୍ନ

୧ । ମହୁମାଛିମାନଙ୍କର ସମାଜ-ଜୀବନ ବର୍ଣ୍ଣନ କର ।

୨ । ସାମାଜିକ କୀଟମାନଙ୍କ ସମ୍ବନ୍ଧରେ ଏକ କ୍ଷୁଦ୍ର ପ୍ରବନ୍ଧ ଲେଖ ।

୩ । ଶ୍ରମିକ ମହୁମାଛିମାନଙ୍କର ବିଭିନ୍ନ କାର୍ଯ୍ୟର ଏକ ବିବରଣୀ ଦିଅ ।

—୦—

## ଦ୍ୱିତୀୟ ଅଧ୍ୟାୟ

## ନରଦେହ ଗଠନ

ମନୁଷ୍ୟ ଗୋଟିଏ ମେରୁଦଣ୍ଡୀ ଓ ସ୍ତନ୍ୟପାୟୀ ପ୍ରାଣୀ । ତା'ର ଭଲମନ୍ଦ ଚିନ୍ତା କରିବାର ଶକ୍ତି ଥିବାରୁ ସେ ପ୍ରାଣୀମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ । ମନୁଷ୍ୟ ଦେହକୁ ପ୍ରଧାନତଃ ଚାରି ଭାଗରେ ବିଭକ୍ତ କରିଯାଇ ପାରେ; ଯଥା—(୧) ମୁଣ୍ଡ, (୨) ଗଣ୍ଡି ବା ଦେହ, (୩) ହାତ ଓ (୪) ଗୋଡ଼ ।

**ମୁଣ୍ଡ**—ମୁଣ୍ଡର ଉପର ଓ ପଛ ଅଂଶକୁ ଖପୁରି କହନ୍ତି । ଏହା କେତେଗୁଡ଼ିଏ ହାଡ଼ରେ ଗଢ଼ା । ଖପୁରି ଉପର ଚମ ଓ କେଶରେ ଢଙ୍କା । ମୁଣ୍ଡର ସାମନା ଅଂଶକୁ ମୁଖମଣ୍ଡଳ କୁହାଯାଏ । ମୁଖମଣ୍ଡଳରେ ଦୁଇଟି ଆଖି ଓ ସେମାନଙ୍କ ମଝିରେ ନାକ ରହିଅଛି । ନାକ ତଳକୁ ମୁଖ ବା ପାଟି । ପାଟି ତଳର ହାଡ଼ୁଆ ଅଂଶକୁ

ଚବୁକ କହନ୍ତି । ମୁଖମଣ୍ଡଳର ଦୁଇପଟେ ଦୁଇଟି କାନ ଅଛି । ଖପୁରି ମଧ୍ୟରେ ମସ୍ତିଷ୍କ ଅବସ୍ଥିତ ।

**ଆଖି**—ମୁଖମଣ୍ଡଳରେ ନାକର ଉପର ଅଂଶରେ ଦୁଇପାଖେ ଦୁଇଟି ହାଡ଼ୁଆ ଖୋପ ଅଛି । ତା'ର ଭିତରେ ଆଖି ଅବସ୍ଥିତ । ଏହା ସାହାଯ୍ୟରେ ଆମେ ଦେଖିପାରୁ । ଆଖିକୁ ଦୁଇଟି ପତା ବିପଦ ଆପଦରୁ ରକ୍ଷା କରନ୍ତି । ପତାରେ ଲୋମ ଅଛି । ଏଗୁଡ଼ିକ ଧୂଳିକୁ ଅଟକାଇବାରେ ସାହାଯ୍ୟ କରନ୍ତି । ତା' ଗୁଡ଼ ଉପର ପତା ତଳେ ଲୋତକ ଗ୍ରନ୍ଥି ଅଛି । ଏଥିରୁ ଲୁହ ଝରି ଆଖିରେ ପଡ଼ୁଥିବା




ମନୁଷ୍ୟର ଆଖି ଓ ଲୋତକ ଗ୍ରନ୍ଥି

ମଇଳାକୁ ଧୋଇଦିଏ । କୌଣସି କାରଣରୁ ଲୁହ ଅଧିକ ପରିମାଣରେ ଝରିଲେ ତାହା 'ଏକ ପଥ ଦେଇ ନାକ ଭିତରକୁ ବୋହିଯାଏ । ସେଥିପାଇଁ କାନ୍ଦିଲାବେଳେ ନାକବାଟେ ମଧ୍ୟ ପାଣି ବାହାରେ ।

ଆଖିର ପ୍ରଧାନ ଅଂଶ ହେଉଛି ଆଖିଡ଼ୋଳା । ଏହା ଗୋଲାକାର । ସେଥିରେ ବେଶୀ ଭାଗ ଧଳା ଓ ସାମନା ମଝି ଅଂଶ

କଲା । ତାକୁ କଲାଡୋଳା କହନ୍ତି । କଲାଡୋଳା ମଝିରେ ଗୋଟିଏ ରନ୍ଧ୍ର ଅଛି । ତାକୁ ଆଖିର ପୁଅ ବା ତାରା କୁହାଯାଏ । ଏହି ରନ୍ଧ୍ର ଦେଇ ବାହାରର ଆଲୁଅ ଆଖି ଭିତରେ ପଶେ । ଆଖିପୁଅ ପଛକୁ କାଚପରି ଏକ ପଦାର୍ଥ ଅଛି । ତାକୁ ଦୃଷ୍ଟିକାଚ କହନ୍ତି । ଆଲୁଅ ଏହା ଦେଇ ଯିବାରୁ ଆଖି ଭିତରର ପଛପଟେ ଆମ ଆଖି ଆଗରେ ଥିବା ପଦାର୍ଥର ଓଲଟା ପ୍ରତିବିମ୍ବ ପଡ଼େ । ତାହାର ବାର୍ତ୍ତା ଚକ୍ଷୁ ସ୍ନାୟୁ ମସ୍ତିଷ୍କକୁ ପଠାଏ ଏବଂ ସେଥିରୁ ଆମେ କୌଣସି ବସ୍ତୁର ଧାରଣା କରିପାରୁ ।

**କାନ**—କାନଦ୍ୱାରା ଆମେ ଶୁଣୁଁ । 'କାନ ଧର' କହିଲେ ଆମେ ଯାହା ଧରୁ ତାହା କାନର ବାହାର ଅଂଶ । ମସ୍ତିଷ୍କ ଭିତରେ କାନର ଜଟିଳ ଅଂଶ ରହିଅଛି । କୌଣସି ଶବ୍ଦ ହେଲେ ତାହା ବାୟୁରେ ତରଙ୍ଗର ସୃଷ୍ଟି କରେ । ଏହା ଆସି ବାହାର କାନରେ ବାଜି କାନ ନଳୀ ଭିତରେ ପ୍ରବେଶ କରେ । କାନ ନଳୀ ଯେଉଁଠି ଶେଷ ହୋଇଅଛି ସେଠି ଗୋଟିଏ ପରଦା ଅଛି । ତାକୁ ଗିର କହନ୍ତି ।




ମନୁଷ୍ୟର କାନ

୧, ୨—କାନର ବାହାର ଅଂଶ, ୩—କାନ ଭିତର ନଳୀ, ୪—ଗିର

କାନନଳୀ ଟିକିଏ ବଙ୍କା ଓ ତା' ଭିତରେ ଶ୍ଳେଷ୍ମ ଅଛି । ପବନରେ ଉଡ଼ୁଥିବା ଧୂଳି କଣ୍ଟ କାନ ଭିତରେ ପଶିଯାଏ । ମାତ୍ର ଏହି ଶ୍ଳେଷ୍ମ ତାକୁ ଅଟକାଇ ଦିଅନ୍ତି । ତାହା କାନଭିତରେ ବାହାରୁଥିବା ଅଠାଳିଆ

ପଦାର୍ଥ ସଙ୍ଗେ ମିଶି ଯାଇ ହୁଏ । ଶବ୍ଦ ତରଙ୍ଗ ଗିରରେ ବାଜଲେ ଗିର କମ୍ପିତ ହୁଏ । ଗିର କମ୍ପିତ ହେବାରୁ ଗିର ପଛରେ ଥିବା ଭିତର କାନର ଜଟିଳ ଅଂଶ ସବୁ କମ୍ପିତ ହୁଅନ୍ତି । ଶେଷରେ ଏହି କମ୍ପନ କର୍ଣ୍ଣସ୍ନାୟୁ ଦେଇ ମସ୍ତିଷ୍କରେ ପହଞ୍ଚେ ଓ ଆମେ ଶୁଣିପାରୁ ।

ନାକ—ନାକ ସାହାଯ୍ୟରେ ଆମେ ପଦାର୍ଥର ଗନ୍ଧ ବାରିପାରୁ । ଆଉରି ମଧ୍ୟ ନାକବାଟେ ଆମେ ଦେହ ଭିତରକୁ ପବନ ନେଉ ଓ




ମନୁଷ୍ୟର ନାକ ଓ ମୁଖ ଗହ୍ୱର

ବାହାରକୁ ଛାଡୁ । ନାକର ଦୁଇଟି ପୁଡ଼ା । ନାକ-ପୁଡ଼ାର ଭିତର ଅଂଶ ବଙ୍କା ଓ ସେଥିରେ ଅନେକ ଲୋମ ଅଛି । ନାକ ଭିତରେ

ଥିବା ଗ୍ରନ୍ଥିରୁ ସବୁବେଳେ ଏକପ୍ରକାର ଅଠାଳିଆ ତରଳ ପଦାର୍ଥ ବାହାରୁଥାଏ । ଫଳରେ ବାୟୁରେ ଥିବା ଧୂଳି ନାକ ଭିତରେ ସେମରେ ଅଟକିଯାଏ । ସ୍ୱା'କୁ ଆମେ ନାକର ମଳ ବୋଲି କହୁ । ମସ୍ତିଷ୍କରେ ଏକ ଗନ୍ଧକେନ୍ଦ୍ର ଅଛି । ଯେକୌଣସି ଗନ୍ଧ ନାକରେ ବାଜିଲେ ତା'ର ଖବର ସ୍ନାୟୁ ଦେଇ ମସ୍ତିଷ୍କକୁ ଯାଏ ଓ ଆମେ ଗନ୍ଧ ଜାଣିପାରୁ ।

ମୁଖ—ମୁଖମଣ୍ଡଳରେ ନାକ ତଳକୁ ମୁଖ ବା ପାଟି ଅବସ୍ଥିତ । ପାଟିକୁ ଦୁଇଟି ଓଠ ରକ୍ଷାକରେ । ଉପର ଓଠ ତଳ ଓଠ ସହିତ ମିଶିଗଲେ ମୁଖ ବନ୍ଦ ହୁଏ । ପାଟି ଭିତରେ ଜିଭ ଓ ଦାନ୍ତ ରହିଅଛି ।




ମନୁଷ୍ୟର ଉପର ପାଟିର ଦାନ୍ତ

ଆମର ଉପର ଓ ତଳପାଟିରେ ଦୁଇଧାଡ଼ି ଦାନ୍ତ । ଜଣେ ପ୍ରାପ୍ତ ବୟସ୍କ ଲୋକର ଉପର ପାଟିରେ ଷୋଳଟି ଦାନ୍ତ ଓ ତଳ ପାଟିରେ ଷୋଳଟି ଦାନ୍ତ । ଅର୍ଥାତ୍ ପ୍ରତି ପାଟିରେ ପ୍ରତି ପାଖରେ ଆଠଟି କରି ଦାନ୍ତ । ଏଗୁଡ଼ିକ ଆକାର ଓ କାର୍ଯ୍ୟ ଏକ ନୁହେଁ । ପ୍ରତି ପାଟିର ପ୍ରତି ପାଖରେ (ଚିତ୍ରଦେଖ) ଦୁଇଟି କର୍ଣ୍ଣ ଗ୍ରାମୂଦାନ୍ତ ଗୋଟିଏ ଶ୍ୱାନଦନ୍ତ, ଦୁଇଟି ଚର୍ବଣ ଦନ୍ତ ଓ ତିନୋଟି ପେଷଣ

ଦନ୍ତ । ଏଣୁ ଆମର ଉପର ବା ତଳ ପାଟିରେ ୪ଟି ଗ୍ଲୁମୂଦାନ୍ତ, ୨ଟି ଶ୍ୱାନଦନ୍ତ, ୪ଟି ଚର୍ବଣ ଦନ୍ତ ଓ ୬ଟି ପେଷଣ ଦନ୍ତ ରହିଅଛି । ଯେଉଁ ଦାନ୍ତ ଖାଦ୍ୟ ପଦାର୍ଥକୁ କାଟି ଖଣ୍ଡ ଖଣ୍ଡ କରେ ତାକୁ




ମନୁଷ୍ୟର ଜିଭ

କର୍ତ୍ତନ ଦନ୍ତ ବା ଗ୍ଲୁମୂଦାନ୍ତ କହନ୍ତି । ସେହିପରି ଯେଉଁ ଦାନ୍ତର ଆକାର କୁକୁରର ଦାନ୍ତ ପରି ମୁନିଆ ଓ ଯାହା ସାହାଯ୍ୟରେ ଅନ୍ୟ ଜୀବର ମାଂସ ଓଟାରି ଛିଣ୍ଡାଯାଏ ତାକୁ ଶ୍ୱାଦନ୍ତ ବା ଶ୍ୱାନଦନ୍ତ, ଯେଉଁ ଦାନ୍ତ ସାହାଯ୍ୟରେ ଚୋବାଯାଏ ତାକୁ ଚର୍ବଣ ଦନ୍ତ ଏବଂ ଯେଉଁ ଦାନ୍ତ ସାହାଯ୍ୟରେ ଖାଦ୍ୟପଦାର୍ଥକୁ ପେଷି ଗୁଣ୍ଡ କରିଦିଆଯାଏ ତାକୁ ପେଷଣ ଦନ୍ତ କହନ୍ତି । ଦାନ୍ତର ମୂଳ ମାଢ଼ି ଭିତରେ ଶକ୍ତ ଭାବେ ରହିଥାଏ ଓ ଅଳ୍ପ ଅଂଶ ଉପରକୁ ବାହାରିଥାଏ ।

ଆମର ଜିଭ ତଳପାଟିରେ ଲଗିଅଛି । ଏହାର ଅଗ୍ରଭାଗ ଚଳନଶୀଳ । ଜିଭ ଉପର ଦରଦର ହୋଇଥାଏ । ଏମାନଙ୍କ ସାହାଯ୍ୟରେ ଆମେ ଖାଦ୍ୟର ସ୍ୱାଦ ଜାଣିପାରୁ । ଜିଭର ସବୁ ଅଂଶରେ ସବୁ ପ୍ରକାର ସ୍ୱାଦ ବାରି ହୁଏ ନାହିଁ । ଜିଭ ଅଗରେ ମିଠା, ଧାରରେ ଖଟା ଓ ଲୁଣିଆ ଏବଂ ପଛ ଅଂଶରେ ପିତା ସ୍ୱାଦ ଅନୁଭୂତ ହୁଏ ।

ଗଣ୍ଡି—ମୁଣ୍ଡତଳକୁ ବେକ ଓ ତା' ତଳକୁ ଗଣ୍ଡି ଅବସ୍ଥିତ । ଗଣ୍ଡି ଉପରର ଦୁଇ ପାଖକୁ ଦୁଇଟି ହାତ ଓ ତଳ ଆଡ଼କୁ ଦୁଇଟି ଗୋଡ଼ ଅଛି । ଗଣ୍ଡି ଭିତର ଏକ ପରଦା ଦ୍ୱାରା ଦୁଇଭାଗ ହୋଇଅଛି । ଉପର ଅଂଶକୁ ବକ୍ଷ ଓ ତଳ ଅଂଶକୁ ଉଦର କହନ୍ତି । ବକ୍ଷର ଭିତର ଗଠନ ପିଞ୍ଜରା ପରି । ଏହାର ସମ୍ମୁଖ ପାର୍ଶ୍ୱରେ ଅର୍ଥାତ୍ ଆଗକୁ ପଞ୍ଜର ହାଡ଼ ଓ ପଛ ପାଖରେ ମେରୁଦାଣ୍ଡ । ଏମାନଙ୍କ ଭିତରେ ଆମର ଫୁସ୍‌ଫୁସ୍ ଓ ହୃତ୍‌ପିଣ୍ଡ ରହିଅଛି ।

ଉଦର ଭିତରେ ବେକଠାରୁ ଆରମ୍ଭ ହୋଇ ମଳଦ୍ୱାର ପର୍ଯ୍ୟନ୍ତ ଆମର ଖାଦ୍ୟ ନଳୀ ଅବସ୍ଥିତ । ଜଣେ ପୂର୍ଣ୍ଣବୟସ୍କ ବ୍ୟକ୍ତିର ଖାଦ୍ୟନଳୀର ମୋଟ ଲମ୍ବ ଦଶ ମିଟର । ଉଦର ଭିତରେ ଖାଦ୍ୟନଳୀ ଓ ଅନ୍ୟାନ୍ୟ ଯନ୍ତ୍ର ମଧ୍ୟ ରହିଛି । ଆମ ଦେହରେ ମୋଟ ୨୦୬ ଖଣ୍ଡ ହାଡ଼ ଅଛି । ଏହି ଗୁଡ଼ିକ ଉପରେ ମାଂସ ଓ ଚମ ରହିଥିବାରୁ ଏତେଗୁଡ଼ିଏ ହାଡ଼ ଅଛି ବୋଲି ଜଣା ପଡ଼େ ନାହିଁ ।

ହାତ—ଆମର ଦୁଇଟି ହାତ । ହାତକୁ ତିନୋଟି ଅଂଶରେ ଭାଗ କରାଯାଇପାରେ; ଯଥା—ବାହୁ, ଅଗ୍ରବାହୁ ଓ ପାପୁଲି । କାନ୍ଧଠାରୁ କହୁଣୀ ପର୍ଯ୍ୟନ୍ତ ଅଂଶ ବାହୁ, କହୁଣୀଠାରୁ ମଣିବନ୍ଧ ପର୍ଯ୍ୟନ୍ତ ଅଂଶ ଅଗ୍ରବାହୁ ଓ ମଣିବନ୍ଧର ତଳ ଅଂଶକୁ ପାପୁଲି ବା

କରତଳ କହନ୍ତି । ପ୍ରତି ପାପୁଲିରେ ପାଞ୍ଚଟି ଲେଖା ଅଙ୍ଗୁଠି । ଅଙ୍ଗୁଳି ଶେଷରେ ଚେପ୍ଟା ନଖ ଅଛି । ପ୍ରତି ହାତ ୩୨ ଖଣ୍ଡି ହାଡ଼ ଦ୍ୱାରା ଗଢ଼ା । ତା'ଉପରେ ମାଂସପେଶୀ ଓ ଚମ ରହିଅଛି ।



ମନୁଷ୍ୟ ଦେହର ଗଠନ

**ଗୋଡ଼**—ଆମର ଦୁଇଟି ଗୋଡ଼ । ହାତପରି ଗୋଡ଼କୁ ତିନୋଟି ଅଂଶରେ ବିଭକ୍ତ କରାଯାଇପାରେ; ଯଥା—ଜଙ୍ଘ, ନଳୀଗୋଡ଼ ଓ ପାଦ । ପିଚ୍ଛଠାରୁ ଆଣ୍ଠୁ ପର୍ଯ୍ୟନ୍ତ ଅଂଶକୁ ଜଙ୍ଘ ବା ଊରୁ, ଆଣ୍ଠୁଠାରୁ ଗୋଇଠି ଯାଏ ଅଂଶକୁ ନଳୀଗୋଡ଼ ଓ ଗୋଇଠିର

ତଳ ଅଂଶକୁ ପାଦ କହନ୍ତି । ହାତ ପାଦରେ ପାଞ୍ଚଟି କରି ଆଙ୍ଗୁଳି ।
ଆଙ୍ଗୁଳି ଶେଷରେ ଚେପ୍ଟା ନଖ ଅଛି । ଗୋଇଠି ତଳେ ଏକ ମାଂସ
ପିଣ୍ଡୁଳା ଥିବାରୁ ଆମେ ସୁବିଧାରେ ଯିବା ଆସିବା କରିପାରୁ ।
ପ୍ରତି ପାଦ ୨୬ ଗୋଟି ହାଡ଼ ଦ୍ୱାରା ଗଠିତ । ତା'ଉପରେ
ମାଂସପେଶୀ ଓ ଚମ ଲାଗିଅଛି ।

## ପ୍ରଶ୍ନ

୧ । ମନୁଷ୍ୟ ଶରୀରର ଗଠନ ସଂକ୍ଷେପରେ ବର୍ଣ୍ଣନ କର ।

୨ । ମନୁଷ୍ୟର ମୁଖମଣ୍ଡଳର ଭିନ୍ନ ଅଂଶର ନାମ ଲେଖ ଓ ସେମାନଙ୍କର କାର୍ଯ୍ୟ ବର୍ଣ୍ଣନ କର ।

୩ । ଆମ ପାଟିରେ କେତୋଟି ଦାନ୍ତ ? ସେ ସବୁର ଆକାର ଓ କାର୍ଯ୍ୟ ଭିନ୍ନ ଭିନ୍ନ କାହିଁକି ?

୪ । ମଣିଷର ଆଖି, ନାକ ଓ କାନର ସାଧାରଣ ଗଠନ ଓ କାର୍ଯ୍ୟ ଲେଖ ।

୫ । ଆମେ କପରି ଗନ୍ଧ ଓ ସ୍ୱାଦ ବାରୁ ? ନାକ ଭିତରେ ଲୋମ କାହିଁକି ଅଛି ?

୬ । ମନୁଷ୍ୟକୁ ବାନର ସହିତ ତୁଳନା କର ।

---

# ତୃତୀୟ ଅଧ୍ୟାୟ

## ବାୟୁ

ମାଛ ଯେପରି ପାଣି ଭିତରେ ବୁଡ଼ି ରହିଥାଏ, ଆମେ ସେହିପରି ପୃଥିବୀ ଉପରେ ଥିବା ବାୟୁ ଭିତରେ ବୁଡ଼ି ରହିଛୁ । ଖାଦ୍ୟ ଓ ଜଳ ବିନା ମଣିଷ କିଛି ଦିନ ବଞ୍ଚି ରହି ପାରିବ ସିନା, ବାୟୁ ବିନା ଦଣ୍ଡେ ଜୀବନ ଧାରଣ କରି ପାରିବ ନାହିଁ । ଏହାର ସତ୍ୟତା ତୁମେ

ନିଜେ ପରୀକ୍ଷା କରି ପାରିବ । ନାକ ଓ ପାଟି ବୁଜି କିଛି ସମୟ ରହିବାକୁ ଚେଷ୍ଟା କର, ଦେଖିବ ସେପରିଭାବେ ଏକ ମିନିଟ୍ ରହିବା ମଧ୍ୟ ସମ୍ଭବ ନୁହେଁ ।

**ବାୟୁରେ ଉପାଦାନ**—ବାୟୁ ପ୍ରଧାନତଃ ଦୁଇଟି ଗେସ୍‌ର ମିଶ୍ରଣରେ ଗଠିତ, ଯଥା :—ଯବକ୍ଷାରଜାନ ଓ ଅମ୍ଳଜାନ । ଏସବୁ ବ୍ୟତୀତ ଆଉ କେତେକ ପଦାର୍ଥ ବାୟୁରେ ଅଳ୍ପ ପରିମାଣରେ ଥାଏ । ବାୟୁରେ ବର୍ତ୍ତମାନ ଉପାଦାନର ଏକ ତାଲିକା ତଳେ ଦିଆଗଲା:—

| | | |
|---|---|---|
| ଅମ୍ଳଜାନ | ଶତକଡ଼ା | ୨୦.୭୫ |
| ଯବକ୍ଷାରଜାନ | ,, | ୭୭.୧୦ |
| ଅଙ୍ଗାରକାମ୍ଳ ବାଷ୍ପ | ,, | ୦.୦୩ |
| ଜଳୀୟ ବାଷ୍ପ | ,, | ୧.୪୧ |
| ଆରଗନ୍ ପ୍ରଭୃତି ବାଷ୍ପ | ,, | ୦.୦୮ |
| ଧୂଳିକଣା | ( ପରିବର୍ତ୍ତନଶୀଳ ) | |

ସ୍ଥାନଭେଦରେ ବାୟୁରେ ଏହି ଉପାଦାନରେ ତାରତମ୍ୟ ଦେଖାଯାଏ । ବର୍ଷାଦିନେ ବାୟୁରେ ଜଳୀୟ ବାଷ୍ପ ବେଶୀ ଥାଏ ଓ ଶୀତଦିନେ କମ୍ ଥାଏ । କଳକାରଖାନା ଅଞ୍ଚଳରେ ବାୟୁରେ ଅଙ୍ଗାରକାମ୍ଳ ବାଷ୍ପର ପରିମାଣ ଯେତେ, ଗାଁର ଖୋଲା ଜାଗାରେ ତା'ଠାରୁ ଅନେକ କମ୍ ।

**ବାୟୁ କିପରି ଦୂଷିତ ହୁଏ ?**—ସବୁ ସ୍ଥାନର ବାୟୁ ବିଶୁଦ୍ଧ ନ ଥାଏ । ସାଧାରଣତଃ ପାହାଡ଼ ଉପର ଅଞ୍ଚଳ, ସମୁଦ୍ର ତଟ ଓ ନଦୀକୂଳ,ଖୋଲାପଡ଼ିଆ ଆଦି ସ୍ଥାନର ବାୟୁ ବିଶୁଦ୍ଧ । ଜନବହୁଳ ବଡ଼ ସହର, କଳକାରଖାନା ଅଞ୍ଚଳ, ମଇଳା ଖାତ, ପଚା ନର୍ଦ୍ଦମା

ଇତ୍ୟାଦି ପ୍ରକାର ବାୟୁ ଦୂଷିତ । ଧୂଆଁ, ଧୂଳିକଣା, ଅଧିକ ଅଙ୍ଗାରକାମ୍ଳ ବାଷ୍ପ ଓ ରୋଗ ଜୀବାଣୁ ମିଶିଲେ ବାୟୁ ଦୂଷିତ ହୁଏ । ଭଲ ବାୟୁ ଚଳାଚଳ ନ ଥିବା ଘରେ ନିଆଁ ଜାଳିଲେ ଧୂଆଁ ଓ ଅଙ୍ଗାରକାମ୍ଳ ବାଷ୍ପ ବାହାରି ସେ ଘରର ବାୟୁକୁ ଦୂଷିତ କରିପକାଏ । ଏଥିପାଇଁ ଝରକା କବାଟ ବନ୍ଦ କରି ଲଣ୍ଠନ ଜାଳି ଶୋଇବା ସ୍ୱାସ୍ଥ୍ୟହାନିକର । ନିମ୍ନଲିଖିତ କାରଣମାନଙ୍କ ପାଇଁ ସାଧାରଣତଃ ବାୟୁ ଦୂଷିତ ହୋଇଥାଏ :—

୧ । ଜୀବଜନ୍ତୁମାନେ ସେମାନଙ୍କର ଶ୍ୱାସକ୍ରିୟାରେ ବାୟୁରୁ ଅମ୍ଳଜାନ ଗ୍ରହଣ କରନ୍ତି ଓ ବାୟୁକୁ ଅଙ୍ଗାରକାମ୍ଳବାଷ୍ପ ଛାଡ଼ନ୍ତି । ଏହା ଫଳରେ ବାୟୁରେ ଅଙ୍ଗାରକାମ୍ଳ ବାଷ୍ପର ପରିମାଣ ବଢ଼ିଯାଏ ।

୨ । କୋଇଲା ପୋଡ଼ିବା, ଇଟା ପୋଡ଼ିବା, ରାନ୍ଧିବା ଇତ୍ୟାଦି ଦ୍ୱାରା ଧୂଆଁ ଓ ଅଙ୍ଗାରକାମ୍ଳବାଷ୍ପ ଉତ୍ପନ୍ନ ହୋଇ ବାୟୁରେ ମିଶେ ।

୩ । ଯାନବାହାନ ରାସ୍ତାରେ ଯାତାୟାତ କରିବା ଦ୍ୱାରା ଓ ପବନରେ ରାସ୍ତାର ଧୂଳି ବାୟୁରେ ମିଶେ ।

୪ । କଳକାରଖାନାମାନଙ୍କରୁ ଅଙ୍ଗାରକାମ୍ଳ ଓ ଅନ୍ୟାନ୍ୟ ବିଷାକ୍ତ ବାଷ୍ପ ବାହାରି ବାୟୁକୁ ଦୂଷିତ କରେ ।

୫ । ଜୀବଜନ୍ତୁର ମୃତ୍ୟୁ ହେଲେ ସେମାନଙ୍କର ପଚା ଦେହର ଦୁର୍ଗନ୍ଧ ଓ ରୋଗ ଉତ୍ପାଦନକାରୀ ଜୀବାଣୁ ବାୟୁରେ ମିଶନ୍ତି ।

୬ । ଶ୍ମଶାନ, ମଇଳାଗାଡ଼ି, ନର୍ଦ୍ଦମା ଓ ଖୋଲା ପାଇଖାନାରୁ ଦୁର୍ଗନ୍ଧ ଜାତ ହୋଇ ବାୟୁକୁ ଦୂଷିତ କରେ ।

୭ । ରୋଗୀର ଛେପ, ଖଙ୍କାର, ବାନ୍ତି, ମଳ, ମୂତ୍ର ଆଦି ଯେଉଁଠି ସେଠି ପକାଇଦେଲେ ତାହା ଶୁଖି ବାୟୁରେ ମିଶି ବାୟୁକୁ ଦୂଷିତ କରନ୍ତି । ନାକରେ କନା ଦେଇ ନ ଛିଙ୍କିଲେ ଛିଙ୍କରେ ବାହାରୁଥିବା ରୋଗ ଜୀବାଣୁ ବାୟୁରେ ମିଶେ ।

୮ । ମେଳା, ସିନେମା, ଥିଏଟର, ସର୍କସ ଆଦି ସ୍ଥାନମାନଙ୍କରେ ଏକ ସ୍ଥାନରେ ବହୁଲୋକ ଗହଳ କରିବାରୁ ସେଠାର ବାୟୁ ଦୂଷିତ ହୁଏ ।

## ମନୁଷ୍ୟ ଶରୀର ପାଇଁ ବାୟୁ କାହିଁକି ଆବଶ୍ୟକ ?

ଆମେ ଖାଦ୍ୟ ଖାଉଁ । ଏହା ଶରୀର ମଧ୍ୟରେ ହଜମ ହୋଇ ଆମକୁ ଶକ୍ତି ଯୋଗାଏ । ତା'ଫଳରେ ଆମେ କାର୍ଯ୍ୟ କରିପାରୁ । ମାତ୍ର ଦହନ କ୍ରିୟା ନ ହେଲେ ଶକ୍ତି ଉତ୍ପନ୍ନ ହୁଏ ନାହିଁ । ଆମ ଶରୀର ମଧ୍ୟରେ ଖାଦ୍ୟର ଦହନ କ୍ରିୟା ହୁଏ । ସାଧାରଣ କଥାରେ ଏହାକୁ ହଜମ କ୍ରିୟା କହନ୍ତି । ପେଟ ରୋଗ ଥିଲେ ବା ଅନ୍ୟ କେତେକ ରୋଗ ହୋଇଥିଲେ ସାଧାରଣ ଖାଦ୍ୟ ହଜମ ହୁଏ ନାହିଁ । ସେଥିପାଇଁ ସେତେବେଳେ କାମ କରିବାପାଇଁ ଆବଶ୍ୟକ ଶକ୍ତି ଉତ୍ପନ୍ନ ହୋଇପାରେ ନାହିଁ ଓ ବିଶ୍ରାମ ଦରକାର ହୁଏ । ଆମ ଶରୀର ମଧ୍ୟରେ ସଦାସର୍ବଦା ରକ୍ତନଳୀମାନଙ୍କରେ ରକ୍ତସ୍ରୋତ ବହୁଛି । ତାକୁ ରକ୍ତ ସଞ୍ଚାଳନ କ୍ରିୟା କହନ୍ତି । ଦେହର ବିଭିନ୍ନ ସ୍ଥାନରେ ଉତ୍ପନ୍ନ ହେଉଥିବା ଦୂଷିତ ପଦାର୍ଥ ରକ୍ତସ୍ରୋତକୁ ଚାଲିଆସେ । ମାତ୍ର ଦୂଷିତ ପଦାର୍ଥକୁ ଶରୀର ମଧ୍ୟରୁ ସଦାକୁ ବାହାର କରି ନ ଦେଲେ ଶରୀରର କ୍ଷତି କରିବ । ଏଥିପାଇଁ ଆବଶ୍ୟକ ହୁଏ ଅମ୍ଳଜାନ । ଆମେ ଜାଣୁ ବାୟୁରେ ଅମ୍ଳଜାନ ଅଛି । ପ୍ରଶ୍ୱାସରେ ଆମେ ବାୟୁ ଗ୍ରହଣ କରୁ । ଏହା ଫୁସ୍‌ଫୁସ୍‌କୁ ଯାଇ ପହଞ୍ଚେ । ସେଠାକୁ ଦେହର ଦୂଷିତ ରକ୍ତ ଆସିଥାଏ । ଫୁସ୍‌ଫୁସ୍‌ରେ ବାୟୁର ଅମ୍ଳଜାନ ରକ୍ତରେ ମିଶେ ଓ ରକ୍ତର ଅଙ୍ଗାରକାମ୍ଳ ବାଷ୍ପ ବାୟୁରେ ମିଶେ । ନିଶ୍ୱାସରେ ଏହି ଦୂଷିତ ବାୟୁକୁ ଆମେ ବାହାରକୁ ଛାଡ଼ି ଦେଉ । ଏଣୁ ବାୟୁ ଆମ ଶରୀରର ଦୂଷିତ ବାଷ୍ପକୁ ଦୂରୀଭୂତ କରିବାରେ ଓ ଶରୀରରେ ଶକ୍ତି ଉତ୍ପନ୍ନ କରିବାରେ ସାହାଯ୍ୟ କରେ ।

ବିଶୁଦ୍ଧ ବାୟୁର ଉପକାରିତା—ପ୍ରଶ୍ବାସରେ ଆମେ ବିଶୁଦ୍ଧ ବାୟୁ ଗ୍ରହଣ କରୁ । ନିଶ୍ବାସରେ ଆମେ ଯେଉଁ ବାୟୁ ଗ୍ରହଣ ଦେଉ ତାହା ଦୂଷିତ । ଏହି ଦୁଇପ୍ରକାର ବାୟୁରେ ବିଭିନ୍ନ ବାଷ୍ପର ଉପାଦାନ ତଳେ ଦିଆଗଲା ।

| | ପ୍ରଶ୍ବାସ ବାୟୁ | ନିଶ୍ବାସ ବାୟୁ |
|---|---|---|
| ୧ । ଅମ୍ଳଜାନ | ୨୦·୯୪ % | ୧୬·୫୦ % |
| ୨ । ଯବକ୍ଷାରଜାନ | ୭୭·୧୦ % | ୭୭·୧୦ % |
| ୩ । ଅଙ୍ଗାରକାମ୍ଳ ବାଷ୍ପ | ୦·୦୪ % | ୪·୫୦ % |
| ୪ । ଜଳୀୟ ବାଷ୍ପ | ସାମାନ୍ୟ | ଅନେକ ବେଶୀ |
| ଜୈବିକ ପଦାର୍ଥ | ନାହିଁ | ସାମାନ୍ୟ |
| ଉତ୍ତାପ | ବାୟୁର ଉତ୍ତାପ | ଆମ ଶରୀରର ଉତ୍ତାପ ପ୍ରାୟ ୯୮·୬°F |

ଜନବହୁଳ ସହରମାନଙ୍କରେ ବାୟୁରେ ଅମ୍ଳଜାନର ପରିମାଣ କମ୍ ଥାଏ । ଏଥିପାଇଁ ନଦୀ ଓ ସମୁଦ୍ରକୂଳରେ, ଖୋଲା ପଡ଼ିଆରେ ବୁଲିବା ଉଚିତ । ଏହା ଫଳରେ ଯଥେଷ୍ଟ ବିଶୁଦ୍ଧ ବାୟୁ ଆମ ଶରୀର ଭିତରକୁ ଯାଇପାରେ । ଖୋଲା ସ୍ଥାନରେ ବ୍ୟାୟାମ କଲେ ଯଥେଷ୍ଟ ପରିମାଣରେ ବିଶୁଦ୍ଧ ବାୟୁ ଶରୀର ମଧ୍ୟକୁ ଯାଇ ରକ୍ତକୁ ପରିଷ୍କାର କରେ । ଫଳରେ ମନ ପ୍ରଫୁଲ୍ଲ ହୁଏ, କାମ କରିବାକୁ ଉତ୍ସାହ ଆସେ ଓ ଭଲ ନିଦ ହୁଏ । ସେଥିପାଇଁ ଦ୍ୱାର ଝରକା ବନ୍ଦ କରି ପଢ଼ିଲେ ଅଳ୍ପକେ କ୍ଳାନ୍ତି ଆସେ ଓ ପଢ଼ାରେ ବେଶୀ ସମୟ ମନ ଲାଗେ ନାହିଁ । ଶୀତଦିନେ ଝରକା କବାଟ ବନ୍ଦ କରି ଶୋଇବା ବା ମୁହଁ ଘୋଡ଼ାଇ ଶୋଇବା ଉଚିତ ନୁହେଁ । ତଦ୍ଦ୍ୱାରା ଶରୀର ବିଶୁଦ୍ଧ ବାୟୁ ପାଇପାରେ ନାହିଁ ।

**ଦୂଷିତ ବାୟୁର ଅପକାରିତା** ଶରୀର ପାଇଁ ବିଶୁଦ୍ଧ ବାୟୁ ଆବଶ୍ୟକ । ବିଶୁଦ୍ଧ ବାୟୁ ନ ପାଇଲେ ଶରୀର ଅସୁସ୍ଥ ହୁଏ । ବାୟୁରେ ଅଙ୍ଗାରକାମ୍ଳର ପରିମାଣ ଅଧିକ ହେଲେ ତାହା ଆମର ପ୍ରଶ୍ୱାସ ବାୟୁରେ ଶରୀର ମଧ୍ୟରେ ପ୍ରବେଶ କରେ । ଏଣୁ ଶରୀର ଯେତେ ପରିମାଣରେ ବିଷାକ୍ତ ଅଙ୍ଗାରକାମ୍ଳ ବାଷ୍ପ ପଦାର୍ଥକୁ ବାହାର କରିଦେବା କଥା ତାହା କରିପାରେ ନାହିଁ । ଫଳରେ ମୁଣ୍ଡବ୍ୟଥା ଓ ବାନ୍ତି ହୁଏ । ଦୂଷିତ ବାୟୁରେ ନାନାଦ ରୋଗ ଜୀବାଣୁ ଉଡ଼ୁଥାନ୍ତି । ତାହା ସେବନ କଲେ ଶରୀର ମଧ୍ୟରେ ରୋଗ-ଜୀବାଣୁ ପଶି ନାନାଦ ରୋଗ ଉତ୍ପାଦନ କରନ୍ତି ।

ଗୋଟିଏ ଛୋଟ ଘରେ ଅନେକ ଗୁଡ଼ିଏ ଲୋକ ରୁଣ୍ଡହୋଇ ବେଶି ସମୟ ବସିଲେ ଦୂଷିତ ବାୟୁ ଶୀଘ୍ର ଶୀଘ୍ର ବାହାରକୁ ଯିବା ପାଇପାରେ ନାହିଁ । ଏହାଫଳରେ ସେହି ଘରର ବାୟୁରେ ଅଙ୍ଗାରକାମ୍ଳ ବାଷ୍ପର ପରିମାଣ ବଢ଼ିଯାଏ ଓ ଶ୍ୱାସରୋଧ ହେଲପରି ଲାଗେ । ଥିଏଟର ଓ ସିନେମା ଘରମାନଙ୍କର ଅନେକ ସମୟରେ ଏପରି ଲାଗିବାର ତୁମ୍ଭେମାନେ ଅନୁଭବ କରିଥିବ ।

ଆଗରୁ କୁହାଯାଇଅଛି, ନର୍ଦ୍ଦମା ଓ ମଇଳାଖାତ ଅଞ୍ଚଳରେ ବାୟୁରେ ଦୁର୍ଗନ୍ଧ ମିଶେ । ସେସବୁ ସ୍ଥାନରେ ବେଶୀ ସମୟ ରହିଲେ ବାନ୍ତି ଲାଗେ ଓ ଅରୁଚି ଧରେ ।

**ବାୟୁସଂକ୍ରମିତ ରୋଗ** ବାୟୁରେ ଅନେକ ପ୍ରକାର ରୋଗ-ଜୀବାଣୁ ଉଡ଼ି ବୁଲୁଥାନ୍ତି, ଯଥା:—ସର୍ଦ୍ଦି, ଇନ୍‌ଫ୍ଲୁଏନ୍‌ଜା, ଗାଲୁଆ (ମାମ୍ପସ୍), ଧଇଁକାଶ (ହୁପିଙ୍ଗ୍‌କଫ୍), ବସନ୍ତ, ହାଡ଼ଫୁଟି, ମିଳିମିଳା, ଯକ୍ଷ୍ମା, ଡିପ୍‌ଥେରିଆ ଇତ୍ୟାଦି ।

ସର୍ଦ୍ଦି; ଇନ୍‌ଫ୍ଲୁଏନ୍‌ଜା ସାଧାରଣ ରୋଗ । ଅନେକ ସମୟରେ ବର୍ଷ ଭିତରେ ଏ ସବୁ ବହୁବାର ଆମକୁ ଧରେ । ସର୍ଦ୍ଦି,ଇନ୍‌ଫ୍ଲୁଏନ୍‌ଜା ଆଦି ରୋଗର ବୀଜାଣୁକୁ ଭାଇରସ୍ କହନ୍ତି । ଏମାନେ ଅତି କ୍ଷୁଦ୍ର । ମୁହଁରେ ଲୁଗା ନ ଦେଇ ଛିଙ୍କିଲେ ଥରକର ଛିଙ୍କରେ କୋଟି କୋଟି ରୋଗ-ବୀଜାଣୁ ବାୟୁରେ ପଡ଼ି ଖେଳେଇ ହୋଇଯା'ନ୍ତି । ସୁସ୍ଥଲୋକ ବୀଜାଣୁ-ଭରା ବାୟୁକୁ ପ୍ରଶ୍ୱାସରେ ଗ୍ରହଣ କରି ରୋଗାକ୍ରାନ୍ତ ହୁଏ । ଏଣୁ ଛିଙ୍କିଲାବେଳେ ମୁହଁରେ ରୁମାଲ ଦେବା ଉଚିତ ଓ ସର୍ଦ୍ଦି ବା ଇନ୍‌ଫ୍ଲୁଏନ୍‌ଜା ହୋଇଥିବା ରୋଗୀର ଘରେ ଶୋଇବା ଠିକ୍ ନୁହେଁ । ସେହିପରି ଗାଲୁଆ ଓ ଧଇଁକାଶର ବୀଜାଣୁ ମଧ୍ୟ ପବନରେ ଉଡ଼ି ରୋଗୀଠାରୁ ସୁସ୍ଥଲୋକ ପାଖକୁ ଯାଏ ।

ଆମ ଦେଶରେ ପ୍ରତିବର୍ଷ ବହୁତ ଲୋକ ବସନ୍ତ, ହାଡ଼ଫୁଟି, ମିଳିମିଳା ଆଦି ରୋଗରେ ପଡ଼ନ୍ତି । ଅନେକ ଲୋକ ମରନ୍ତି, ବହୁ ଲୋକ ଚକ୍ଷୁ ହରାନ୍ତି ଏବଂ କେତେକଙ୍କର ମୁହଁ ଓ ଦେହରେ ସବୁଦିନ ପାଇଁ ବସନ୍ତ ଚିହ୍ନ ରହିଥାଏ । କେତେକ ସ୍ୱାସ୍ଥ୍ୟରକ୍ଷାର ନିୟମ ପାଳନ କରି ନ ପାରୁଥିବା ହେତୁ ଏସବୁ ହୋଇଥାଏ । ପ୍ରଥମତଃ ଲୋକେ ନିୟମିତ ରୂପେ ବସନ୍ତ ପ୍ରତିଷେଧକ ଟୀକା ନିଅନ୍ତି ନାହିଁ । ଦ୍ୱିତୀୟରେ, ରୋଗୀର ଘା'ର ବକଳା, ଖଙ୍କାର, ପିଙ୍ଗାଣି ଇତ୍ୟାଦିକୁ ପୋଡ଼ି ନ ଦେଇ ଏଠି ସେଠି ଫୋପାଡ଼ି ଦିଆଯାଏ । ତେଣୁ ରୋଗବୀଜାଣୁ ଧ୍ୱଂସ ନ ହୋଇ ବାୟୁରେ ମିଶି ବାୟୁକୁ ଦୂଷିତ କରନ୍ତି । ବସନ୍ତ ଆଦି ଲାଗିଥିବା ଅଞ୍ଚଳରେ ବାୟୁକୁ ବିଶୋଧିତ କରିବା ପାଇଁ ସ୍ଥାନେ ସ୍ଥାନେ ଘିଅ ଓ ନିମ୍ବପତ୍ର ଜାଳିବା ଦରକାର । ବାସଗୃହର ପବନକୁ ବୀଜାଣୁମୁକ୍ତ କରିବା ଲାଗି ଝୁଣା ଓ ଗନ୍ଧକ ଧୂଆଁ ଦେବା ଆବଶ୍ୟକ ।

ଯକ୍ଷ୍ମା, ଡିପ୍‌ଥେରିଆ ଆଦି ରୋଗୀ ମୁହଁରେ ଲୁଗା ନ ଦେଇ କାଶିଲେ, ଛେପ ଖଙ୍କାର ଏଠି ସେଠି ଫୋପାଡ଼ିଲେ ରୋଗ ବୀଜାଣୁ ଧ୍ୱଂସ ନ ହୋଇ ପବନରେ ମିଶି ସୁସ୍ଥଲୋକର ଶରୀର ମଧ୍ୟରେ ପ୍ରବେଶ କରନ୍ତି । ଆମ ଦେଶରେ ବହୁତ ଲୋକ ଯକ୍ଷ୍ମାରୋଗରେ ଆକ୍ରାନ୍ତ ହେଉଛନ୍ତି ଓ ଅନେକ ଲୋକ ମରୁଛନ୍ତି ।

ଉପରେ ବର୍ଣ୍ଣିତ ସମସ୍ତ ରୋଗ ସଂକ୍ରାମକ ରୋଗ । ଏଣୁ ସେସବୁ ରୋଗରେ ପୀଡ଼ିତ ବ୍ୟକ୍ତିମାନଙ୍କୁ ସୁସ୍ଥଲୋକଠାରୁ ଅଲଗା ରଖିବ ଓ ସ୍ୱାସ୍ଥ୍ୟରକ୍ଷାର ନିୟମ ପାଳନ କରିବ ।

**ବାୟୁ ସଞ୍ଚାଳନ**—ଘରର ବାୟୁ ଯେତେ ବିଶୁଦ୍ଧ ହେବ ଆମର ସ୍ୱାସ୍ଥ୍ୟ ସେତେ ଭଲ ରହିବ । ମାତ୍ର ଆମର ନିଶ୍ୱାସରେ ଅଙ୍ଗାରକାମ୍ଳ ବାଷ୍ପ ବାହାରି ଘରର ବାୟୁକୁ ଦୂଷିତ କରି ପକାଏ । ଅନ୍ୟତ୍ର ଅନେକ କାରଣରୁ ମଧ୍ୟ ଘରର ବାୟୁ ଦୂଷିତ ହୁଏ । ଘରର ଦୂଷିତ ବାୟୁ ଯେପରି ଶୀଘ୍ର ବାହାରକୁ ଚାଲିଯିବ ଓ ଘର ଭିତରକୁ ଦୂଷିତ ବାୟୁ ନ ଆସିବ ସେଥିପାଇଁ କେତେଗୁଡ଼ିଏ ବ୍ୟବସ୍ଥା ଅବଲମ୍ବନ କରାଯିବା ଆବଶ୍ୟକ । ସେଗୁଡ଼ିକ ତଳେ ଦିଆଗଲା ।

୧ । ବାସସ୍ଥାନକୁ ଉଚ୍ଚସ୍ଥାନରେ ତିଆରି କରିବ । ତାହାହେଲେ ଘର ଭଲରୂପେ ବାୟୁ ପାଇପାରିବ ।

୨ । ଘର ନିକଟରେ ଖୋଲା ପାଇଖାନା, ନର୍ଦ୍ଦମା, ଅଳିଆ-ଗଦା ଓ ସନ୍ତସନ୍ତିଆ ସ୍ଥାନ ରଖିବ ନାହିଁ । ସନ୍ତସନ୍ତିଆ ସ୍ଥାନ ଥିଲେ ପୋତି ଉଚ୍ଚା କରିବ । ସହରମାନଙ୍କରେ ଅଳିଆ ଟିଣରୁ ନିୟମିତ ଅଳିଆ ସ୍ଥାନାନ୍ତରିତ ହେବା ଦରକାର ଏବଂ ନାଳୁଆ ଓ ପାଇଖାନା ଆଦି ନିୟମିତ ପରିଷ୍କୃତ ହେବା ଉଚିତ ।

୩ । ସହରମାନଙ୍କରେ ରାସ୍ତା ଚଉଡ଼ା ହେବ ଓ ଧୂଳି ନ ଉଡ଼ିବା ପାଇଁ ମଧ୍ୟେ ମଧ୍ୟେ ରାସ୍ତାରେ ପାଣି ଛିଞ୍ଚା ହେବ ।

୪ । ଘରର ଦ୍ୱାର ଝରକା ଦକ୍ଷିଣମୁହାଁ କଲେ ଘର ଭଲରୂପେ ପବନ ପାଏ ।

୫ । ଦ୍ୱାର ଝରକା ବଡ଼ ବଡ଼ କଲେ ଓ ମୁହାଁମୁହିଁ ବସାଇଲେ ଘର ଭିତରେ ଭଲରୂପେ ବାୟୁ ଚଳାଚଳ ହୁଏ ଓ ସୂର୍ଯ୍ୟର ଆଲୋକ ଘର ଭିତରେ ପ୍ରବେଶ କରି ବାୟୁକୁ ବିଶୁଦ୍ଧ କରେ ।

୬ । ଘରର ଛାତ ପାଖକୁ ଗ୍ରେଟ ଝରକା ବା ଭେଣ୍ଟିଲେଟର୍ ରଖିଲେ ଘରର ଦୂଷିତ ବାୟୁ ପଦାକୁ ବାହାରି ଯିବାରେ ଅଧିକ ସୁବିଧା ହୁଏ ।

୭ । ଶୋଇବା ଘର ଭିତରେ ଯେତେ କମ୍ ଜିନିଷପତ୍ର ରହିବ ସେତେ ଭଲ । କାରଣ ବେଶୀ ଜିନିଷ ରଖିଲେ ବାୟୁ ଚଳାଚଳ ଭଲ ହୁଏ ନାହିଁ ଓ ଜିନିଷର ଆଡ଼ୁଆଳରେ ଦୂଷିତ ବାୟୁ ଜମିରହେ ।

୮ । ବାସଗୃହରେ ଜଣ ପିଛା ୧୪ ବର୍ଗ ମିଟର ଚଟାଣସ୍ଥାନ ରହିବା ଭଲ । ଗୋଟିଏ ଘରେ ପବନ ଯା'ଆସ କରିବାର ସବୁ ସୁବିଧା ଥିଲେ ମଧ୍ୟ ଯଦି ଯେତେଲୋକ ବାସ କରିବା କଥା ତା'ଠାରୁ ଅଧିକ ଲୋକ ବାସ କରନ୍ତି, ତେବେ ଦୂଷିତ ବାୟୁ ଶୀଘ୍ର ଶୀଘ୍ର ବାହାରକୁ ଚାଲିଯାଇ ପାରେ ନାହିଁ ଓ ସ୍ୱାସ୍ଥ୍ୟହାନି କରେ ।

ଆହୁରି ମଧ୍ୟ ସହରମାନଙ୍କରେ ରାସ୍ତା କଡ଼ରେ ବଡ଼ ବଡ଼ ଗଛ ଲଗାହେବା ଉଚିତ ଓ ଉଦ୍ୟାନମାନ ତିଆରି ହେବା ଦରକାର । ଉଦ୍ଭିଦମାନେ ସେମାନଙ୍କର ଖାଦ୍ୟ ପ୍ରସ୍ତୁତ କରିବା ପାଇଁ ବାୟୁରୁ ଅନେକ ପରିମାଣରେ ଅଙ୍ଗାରକାମ୍ଳ

ବାଷ୍ପ ଗ୍ରହଣ କରନ୍ତି । ଜନବହୁଳ ସହରରେ ଚକ ଓ ଉଦ୍ୟାନ ଥିଲେ ସେ ସବୁ ବାୟୁକୁ ବିଶୁଦ୍ଧ କରିବାରେ ବିଶେଷ ସାହାଯ୍ୟ କରନ୍ତି ।

## ଆମର ଶ୍ୱାସକ୍ରିୟା

ଶ୍ୱାସଯନ୍ତ୍ର—ଶରୀରର ଯେଉଁ ଅଙ୍ଗଗୁଡ଼ିକ ଆମର ଶ୍ୱାସ-କ୍ରିୟାରେ ବ୍ୟବହୃତ ହୁଏ ସେସବୁକୁ ଶ୍ୱାସଯନ୍ତ୍ର କହନ୍ତି । ସେଗୁଡ଼ିକ ହେଲା—(୧) ନାକ ଓ ନାସାପଥ, (୨) ଗଳକକ୍ଷ, (୩) ସ୍ୱରଯନ୍ତ୍ର, (୪) ଶ୍ୱାସନଳୀ ଓ କ୍ଲୋମନଳୀ, (୫) ଫୁସ୍‌ଫୁସ୍ ଓ ମଧ୍ୟଛଦା ।

ନାକ ଭିତରେ ଦୁଇଟି ନାସାପଥ ରହିଅଛି । ନାସାପଥ ସିଧା ନ ହୋଇ ବଙ୍କାଟଙ୍କା । ନାକପୁଡ଼ା ଭିତରେ ଛୋଟ ଛୋଟ ଲୋମ ଥାଏ ଓ ଗଳାଆଡ଼କୁ ଏକପ୍ରକାର ଅଠାଳିଆ ପଦାର୍ଥ ବାହାରେ । ଆମ



ମନୁଷ୍ୟର ଶ୍ୱାସଯନ୍ତ୍ର, ୧-ଫୁସ୍‌ଫୁସ୍, ୨-ଗୋଟିଏ ଚରମ କ୍ଲୋମନଳୀ, ୩—ବାୟୁକୋଷ ।

ଛାତିର ଉପରପଟ ଅଂଶକୁ ଗଳକକ୍ଷ କହନ୍ତି । ଶ୍ୱାସନଳୀ ଓ ଖାଦ୍ୟନଳୀ ଗଳକକ୍ଷରୁ ଆରମ୍ଭ ହୋଇଅଛି । (୪୮ ପୃଷ୍ଠାରେ ଚିତ୍ର ଦେଖ)

ଶ୍ୱାସନଳୀର ପ୍ରଥମ ଅଂଶକୁ ସ୍ୱରଯନ୍ତ୍ର କୁହାଯାଏ । ଶ୍ୱାସନଳୀ ତଳଆଡ଼କୁ ଦୁଇଟି ବ୍ରୋମନଳୀରେ ବିଭକ୍ତ । ବ୍ରୋମନଳୀ ଫୁସ୍‌ଫୁସ୍ ଭିତରେ ନାନା ଶାଖା-ପ୍ରଶାଖାରେ ବିଭକ୍ତ ହୋଇଅଛନ୍ତି । ପ୍ରତ୍ୟେକ ବ୍ରୋମନଳୀ ଶାଖାର ଶେଷ ଅଂଶକୁ ଚରମ ବ୍ରୋମନଳୀ କହନ୍ତି (ଚିତ୍ର ଦେଖ) । ଏଗୁଡ଼ିକ ଫୁସ୍‌ଫୁସ୍‌ର ବାୟୁକୋଷ ଭିତରେ ପ୍ରବେଶ କରିଅଛନ୍ତି । ପୂର୍ବେ କୁହାଯାଇଅଛି, ଆମ ଛାତି ଭିତରେ ପଞ୍ଜରା ହାଡ଼ ତଳେ ଦୁଇଟି ଫୁସ୍‌ଫୁସ୍ ଅବସ୍ଥିତ । ଫୁସ୍‌ଫୁସ୍ ଅସଂଖ୍ୟ ବାୟୁକୋଷରେ ଗଠିତ । ଅତି ସୂକ୍ଷ୍ମ ରକ୍ତନଳୀମାନଙ୍କୁ ରକ୍ତଜାଳକ କହନ୍ତି । ବାୟୁକୋଷକୁ ରକ୍ତଜାଳ ଘେରି ରହିଛନ୍ତି ।

ବକ୍ଷ ଓ ଉଦର ମଧ୍ୟରେ ମାଂସର ଏକ ପରଦା ଅଛି । ତାକୁ ମଧ୍ୟଚ୍ଛଦା କୁହାଯାଏ ।

ଶ୍ୱାସକ୍ରିୟା—ବିଶୁଦ୍ଧ ବାୟୁ ଗ୍ରହଣ ଓ ଦୂଷିତ ବାୟୁ ପରିତ୍ୟାଗ—ଏହି କାର୍ଯ୍ୟକୁ ଶ୍ୱାସକ୍ରିୟା କହନ୍ତି । ପ୍ରଶ୍ୱାସରେ ବାୟୁ ନାକପୁଡ଼ା ବାଟେ ଆମ ଶରୀର ମଧ୍ୟରେ ପ୍ରବେଶ କରେ । ଆମେ ଜାଣୁ ବାୟୁରେ ଧୂଳିକଣା ଥାଏ । ଏହା ନାକପୁଡ଼ାର ଭିତର ପାଖରେ ଥିବା ଲୋମ ଓ ନାକର ପଛ ଅଂଶରୁ ବାହାରୁଥିବା ଅଠାଳିଆ ପଦାର୍ଥରେ ଲାଗି ରହିଯାଏ । ବାୟୁର ତାପ ଓ ଶରୀରର ତାପ ଏକ ନୁହେଁ । ଶରୀର ମଧ୍ୟରେ ହଠାତ୍ ଥଣ୍ଡା ବାୟୁ ପଶିଲେ ଶରୀରର କ୍ଷତି କରିବ । ନାସାପଥର ବଙ୍କାଟଙ୍କା ପଥରେ ଗଲାବେଳେ ଶରୀରର ତାପ ଗ୍ରହଣ କରି ବାୟୁ ଉଷୁମ ହୁଏ । ଗଳକଣ୍ଠରେ ପହଞ୍ଚି ଶ୍ୱାସନଳୀରେ ପ୍ରବେଶ କରେ । ତାହା ଶ୍ୱାସନଳୀରୁ ବ୍ରୋମନଳୀ ଦେଇ ବାୟୁକୋଷରେ ପହଞ୍ଚେ । ବାୟୁକୋଷକୁ ଘେରି ରହିଥିବା ରକ୍ତଜାଳକରେ ରକ୍ତ ବାୟୁରୁ ଅମ୍ଳଜାନ ଗ୍ରହଣ କରି ଅଙ୍ଗାରକାମ୍ଳ ବାଷ୍ପ ଛାଡ଼ିଦିଏ ।

ପ୍ରଶ୍ୱାସବେଳେ ଫୁସ୍‌ଫୁସ୍‌ରେ ବାୟୁ ଭର୍ତ୍ତି ହୋଇଯିବାରୁ ତାହା ଫୁଲି ଉଠେ, ମଧ୍ୟଚ୍ଛଦା ପ୍ରସାରିତ ହୁଏ ଏବଂ ଆମର ଛାତି ଫୁଲି ଉଠେ । ନିଶ୍ୱାସ ଛାଡ଼ିଲାବେଳେ ମଧ୍ୟଚ୍ଛଦା ସଙ୍କୁଚିତ ହୁଏ । ତା' ଫଳରେ ଫୁସ୍‌ଫୁସ୍ ସଙ୍କୁଚିତ ହୁଏ ଓ ଆମର ଛାତିର ଆକାର କମିଯାଏ । ଦୂଷିତ ବାୟୁ ଗଳକୋଷରୁ ଫେରି ଆସେ ଓ ନାକପୁଡ଼ା ବାଟେ ବାହାରକୁ ବାହାରିଯାଏ ।

ଶ୍ୱାସକ୍ରିୟାର ଉପଯୁକ୍ତ ରୀତି—ଶରୀରକୁ ବିଶୁଦ୍ଧ ବାୟୁ ଯୋଗାଇବା ଶ୍ୱାସକ୍ରିୟାର ଲକ୍ଷ୍ୟ । ବିଶୁଦ୍ଧ ବାୟୁ ଥିଲେ ମଧ୍ୟ ଶ୍ୱାସକ୍ରିୟା ଯଦି ଠିକ୍ ଭାବରେ ନ ହୁଏ ତେବେ ସ୍ୱାସ୍ଥ୍ୟ ଖରାପ ହୁଏ । ନାକବାଟେ ପବନ ନ ନେଇ ପାଟିବାଟେ ନେବା ଅନୁଚିତ । କାରଣ, ବାୟୁରେ ଥିବା ଧୂଳିକଣା ନାସାପଥରେ ଗଲାବେଳେ ଛାଣି ହୋଇଯାଏ ଓ ଶୀତଳ ବାୟୁ ଉଷୁମ ହୁଏ । ଫଳରେ ଫୁସ୍‌ଫୁସ୍ ପରିଷ୍କୃତ ଓ ଉଷୁମ ବାୟୁ ପାଇପାରେ । ପାଟିବାଟେ ପବନନେଲେ ବାୟୁରୁ ଧୂଳି ଛଣା ହୋଇପାରେ ନାହିଁ ଓ ତାହା ଶୀତଳ ଥାଏ ।



(କ) (ଖ) (ଗ) (ଘ)

ବସିବାର ଢଙ୍ଗ

(କ) ଠିକ୍; (ଖ), (ଗ) ଓ (ଘ)—ଭୁଲ୍ ।

କୁଜା ହୋଇ ବସିଲେ ବା ଚାଲିଲେ କମ୍ୱା ଛାତି ଉପରେ କଷି ହେଉଥିବା ପୋଷାକ ପିନ୍ଧିଲେ ଫୁସ୍‌ଫୁସ୍ ଠିକ୍‌ଭାବେ ପ୍ରସାରିତ ହୋଇ

ପାରେ ନାହିଁ । ଫଳରେ ଶ୍ୱାସକ୍ରିୟା ମଧ୍ୟ ଠିକ୍‌ଭାବେ ହୁଏ ନାହିଁ । ଏଣୁ ଚାଲିଲା ବେଳେ ସିଧା ଚାଲିବ, ବସିଲା ବେଳେ ସିଧା ବସିବ ଏବଂ କଷି କରି ପୋଷାକ ପିନ୍ଧିବ ନାହିଁ ।

ସାଧାରଣ ଶ୍ୱାସକ୍ରିୟା ବେଳେ ଆମର ଫୁସ୍‌ଫୁସ୍ ପୂର୍ଣ୍ଣ ପ୍ରସାରିତ ବା ସଙ୍କୁଚିତ ହୋଇପାରେ ନାହିଁ । ସେଥିପାଇଁ କଳୁଷିତ ବାୟୁ ଫୁସ୍‌ଫୁସ୍‌ରେ ରହିଥାଏ । ଫୁସ୍‌ଫୁସ୍ ଯେତେ ବେଶୀ ପୂର୍ଣ୍ଣରୂପେ



ବସିବାର ଢଙ୍ଗ ଭୁଲ                ବସିବାର ଢଙ୍ଗ ଠିକ୍

ପ୍ରସାରିତ ଓ ସଙ୍କୁଚିତ ହେବ ରକ୍ତ ସେତେ ବେଶୀ ଅମ୍ଳଜାନ ପାଇବ ଓ ଦୂଷିତ ବାୟୁ ବାହାରକୁ ବାହାରି ଆସିବ । ଖୋଲା ବାୟୁରେ ବ୍ୟାୟାମ କଲେ ଏହି କ୍ରିୟା ଭଲରୂପେ ହୁଏ । ରକ୍ତର ସବୁ

ଦୀର୍ଘଶ୍ୱାସ ନେଇ ଧୀରେ ଧୀରେ ନିଶ୍ୱାସ ଗ୍ରହଣ କଲେ ଫୁସ୍‌ଫୁସ୍‌ରେ ବାୟୁ ଅଧିକ ସମୟ ରକ୍ତ ସମ୍ପର୍କରେ ଆସିପାରେ । ତଦ୍ଦ୍ୱାରା ଶ୍ୱାସକ୍ରିୟା ଭଲ ହୁଏ ।

## ପ୍ରଶ୍ନ

୧ । ବାୟୁ କପରି ଦୂଷିତ ହୁଏ ? ତୁମ ଘରେ ବାୟୁ ଯେପରି ଦୂଷିତ ନ ହେବ ସେଥିପାଇଁ କ କ ବ୍ୟବସ୍ଥା କରିବ ?

୨ । ବିଶୁଦ୍ଧ ବାୟୁର ଉପକାରିତା ବର୍ଣ୍ଣନ କର । ଉପଯୁକ୍ତ କ୍ଷେତ୍ରରେ ଶ୍ୱାସକ୍ରିୟା ନ ହେଲେ କଅଣ ହୁଏ ?

୩ । ଆମର ଶ୍ୱାସକ୍ରିୟା କପରି ହୁଏ ବର୍ଣ୍ଣନ କର ।

୪ । 'ବାୟୁ ସଞ୍ଚାଳନ' କହିଲେ କଅଣ ବୁଝ ? ବାସଗୃହରେ ଉପଯୁକ୍ତ ବାୟୁ ସଞ୍ଚାଳନ ପାଇଁ କ କ ବ୍ୟବସ୍ଥା କରିବ ?

୫ । ଦୂଷିତ ବାୟୁର ଅପକାରିତା ଲେଖ । ଦୂଷିତ ବାୟୁ ସେବନ କଲେ କ କ ରୋଗ ହୁଏ ?

୬ । ଉତ୍ତର ଲେଖ—

(କ) ମୁହଁ ଘୋଡ଼ାଇ ଶୋଇଲେ କଅଣ ହୁଏ ?

(ଖ) କୁଜା ହୋଇ ବସିଲେ କ୍ଷତି କଅଣ ?

(ଗ) ମନୁଷ୍ୟ ଶରୀର ପାଇଁ ବାୟୁ ଆବଶ୍ୟକ କାହିଁକି ?

(ଘ) ପାଟି ବାଟେ ଶ୍ୱାସ ନେଲେ କ କ୍ଷତି ହୁଏ ?

---

# ଚତୁର୍ଥ ଅଧ୍ୟାୟ

## ଜଳ

ଜଳ ଆମ୍ଭମାନଙ୍କର ଗୋଟିଏ ଅତି ଆବଶ୍ୟକୀୟ ପଦାର୍ଥ । ଏହା ବିନା କି ଉଦ୍ଭିଦ କି ପ୍ରାଣୀ କେହି ଜୀବନଧାରଣ କରି ପାରିବେ ନାହିଁ । ଆମ ଦେହର ¾ ଭାଗ ଜଳ । ଉଦ୍ଭିଦ ମୃତ୍ତିକାରୁ ଚେର ସାହାଯ୍ୟରେ ଜଳ ଶୋଷଣ କରେ । ଏହି ଜଳ ସହିତ ତାର ଖାଦ୍ୟ ମିଶିଥାଏ । ଜଳର ଅଭାବ ହେଲେ ଆମେ ତୃଷା ଅନୁଭବ କରୁ । ଆମେ ଖାଉଥିବା ଖାଦ୍ୟ ହଜମ ହୋଇ ଜଳ ସହିତ ତରଳ ଅବସ୍ଥାରେ ଶରୀରର ବିଭିନ୍ନ ଅଂଶକୁ ପ୍ରେରିତ ହୁଏ । ଶରୀରର ବିଭିନ୍ନ ସ୍ଥାନରେ ବାହାରୁଥିବା ଦୂଷିତ ପଦାର୍ଥକୁ ଜଳ ଧୋଇଆଣେ ଏବଂ ସେ ସବୁ ମୂତ୍ର ଓ ଝାଳ ଆକାରରେ ବାହାରିଯାଏ । ଗାଧୁଆ, ଧୁଆଧୋଇ, ରନ୍ଧାବଢ଼ା, ଶୌଚକ୍ରିୟା ଆଦି କାର୍ଯ୍ୟ ଜଳ ବିନା ହୋଇ ନ ପାରେ । ଘରଟିଏ ତୋଳିବାକୁ ହେଲେ ଜଳ ଆବଶ୍ୟକ ।

**ଜଳ ଆସେ କେଉଁଠୁ ?**—ସମୁଦ୍ର, ହ୍ରଦ, ନଦୀ, ପ୍ରସ୍ରବଣ ପୋଖରୀ, କୂଅ ଆଦିର ଜଳ ସୂର୍ଯ୍ୟତାପରେ ଜଳୀୟବାଷ୍ପ ଆକାରରେ ଉପରକୁ ଉଠିଯାଏ । ଆକାଶରେ ତାହା ମେଘ ହୋଇ ରହେ । ଥଣ୍ଡା ପାଇଲେ ତାହା ପୁଣି ବୃଷ୍ଟି ଆକାରରେ ତଳେ ପଡ଼େ । ଏଥିର କିଛି ଅଂଶ ମାଟି ଭେଦି ତଳକୁ ଚାଲିଯାଏ ଏବଂ କିଛି ଅଂଶ ସମୁଦ୍ର ହ୍ରଦ, ନଦୀ, ପୋଖରୀ, କୂଅ ଆଦିରେ ଜମେ ।

ସମୁଦ୍ର ଜଳ ଲୁଣିଆ । ସେଥିରେ ଲୁଣ ବ୍ୟତୀତ ଅନ୍ୟ ଖଣିଜ ଲବଣ ମଧ୍ୟ ଥାଏ । ତେଣୁ ତାହା ପାନୀୟ ଉପଯୋଗୀ ନୁହେଁ । ନଦୀ ଓ ଝରଣାର ଜଳ ଗତିଶୀଳ ହୋଇଥିବାରୁ ସେ ସବୁର

ଜଳ କେତେକ ପରିମାଣରେ ବିଶୁଦ୍ଧ । ପ୍ରସ୍ରବଣର ଜଳ ମାଟିତଳୁ ଉଠୁଥିବାରୁ ଏହା ସାଧାରଣତଃ ବିଶୁଦ୍ଧ ଥାଏ । ପୋଖରୀ ଓ କୂପରେ ଜଳ ଆବଦ୍ଧ ହୋଇ ରହୁଥିବାରୁ ତାହା ନିୟମିତ ବିଶୋଧିତ ନ ହେଲେ ଦୂଷିତ ହୋଇଥାଏ । ବୃଷ୍ଟି ଜଳ ଅନେକ ପରିମାଣରେ ବିଶୁଦ୍ଧ । ମାତ୍ର ପ୍ରଥମ ବର୍ଷା । ସଞ୍ଚିତ ଆକାଶରେ ଉଡ଼ୁଥିବା ଧୂଳିକଣା ଓ ରୋଗବୀଜାଣୁ ସେଥିରେ ମିଶିଥାଏ । ଏଣୁ ଅସରା ବା ଅସରାଏ ବର୍ଷା ପରେ ଯେଉଁ ବୃଷ୍ଟିଜଳ ପଡ଼େ ତାହା ବିଶୁଦ୍ଧ ।

**ଜଳ ଦୂଷିତ ହୁଏ କିପରି ?**—ସାଧାରଣତଃ ନଦୀ, ପୋଖରୀ ଓ କୂଅର ଜଳ ବ୍ୟବହାର କରାଯାଏ । ନିମ୍ନଲିଖିତ କାରଣମାନଙ୍କ ଯୋଗୁ ସେ ସବୁର ଜଳ ଦୂଷିତ ହୁଏ ।

୧ । ମନୁଷ୍ୟ ଓ ପଶୁ ଏକ ପୋଖରୀରେ ସ୍ନାନ କଲେ ପୋଖରୀର ଜଳ ଦୂଷିତ ହୁଏ । ଯେଉଁ ପୋଖରୀର ଜଳରେ ଲୋକେ ସ୍ନାନ କରନ୍ତି ସେଥିରେ ଗାଈ, ମଇଁଷି ଆଦି ଗାଧୋଇବା ବା ପାଣି ପିଇବା ଠିକ୍ ନୁହେଁ । ଗାଈଗୋରୁ ପୋଖରୀରେ ପଶି କାଦୁଅ ତକଟି ପାଣିକୁ ଗୋଳିଆ କରି ଦିଅନ୍ତି ଓ ମଳମୂତ୍ର ତ୍ୟାଗ କରି ଜଳକୁ ଦୂଷିତ କରନ୍ତି । ଯେଉଁ ପୋଖରୀର ଜଳ ପାନୀୟ ରୂପେ ବ୍ୟବହୃତ ହୁଏ ସେ ପୋଖରୀରେ ଲୋକ ଗାଧୋଇବା ଉଚିତ ନୁହେଁ । ଜଳରେ ଦେହର ମଇଳା ମିଶିବାରୁ ତାହା ପାନୀୟର ଅନୁପଯୋଗୀ ହୁଏ । ଯେଉଁ କୂଅରୁ ପାନୀୟ ଜଳ ସଂଗୃହୀତ ହୁଏ ତା ମୂଳରେ ଗାଧୋଇଲେ ଗାଧୁଆ ପାଣି କୂଅରେ ପଡ଼େ ଓ ତଦ୍ୱାରା କୂପଜଳ ଦୂଷିତ ହୋଇଯାଏ ।

୨ । ଯେଉଁ ପୋଖରୀରେ ଲୋକେ ସ୍ନାନ କରନ୍ତି ତାହା ଅନ୍ୟ କୌଣସି କାର୍ଯ୍ୟ ପାଇଁ ବ୍ୟବହୃତ ହେବା ଅନୁଚିତ । ଲୋକେ

ପୋଖରୀ ମୂଳେ ଦାନ୍ତଘଷି ପାଣି କୁଳୁକୁଳୁ କରି ପୋଖରୀ ଭିତରକୁ ଫିଙ୍ଗନ୍ତି, ଛେପ, ଖଙ୍କାର, ଦାନ୍ତକାଠି ପୋପାଡ଼ନ୍ତି, ମଇଳା ଲୁଗା କାଚନ୍ତି ଓ ଅଇଁଠା ବାସନ ମାଜନ୍ତି । ଏସବୁ ଦ୍ୱାରା ଜଳ ଦୂଷିତ ହୁଏ । ରୋଗୀର ବ୍ୟବହୃତ ବାସନ ଓ ଲୁଗାପଟା ଧୁଆ ହେବାଦ୍ୱାରା ଜଳ ରୋଗ ବୀଜାଣୁ ଦ୍ୱାରା ସଂକ୍ରମିତ ହୁଏ ।



ଅପରିଷ୍କୃତ ପୋଖରୀ

ଗ । ଗାଧୁଆ ପୋଖରୀରେ କେହି କେହି ବାଉଁଶ, ନଳିତା ଆଦି କଷ କରନ୍ତି । ତଦ୍ୱାରା ପୋଖରୀର ଜଳ ଦୂଷିତ ହୁଏ ।

୪ । ହଇଜା, ବସନ୍ତ ଆଦି ସଂକ୍ରାମକ ରୋଗରେ ମଲେଥିବା ଲୋକଙ୍କ ଶବ ଓ ଲୁଗାପଟା ନଦୀରେ ଭସାଇ ଦେଲେ ନଦୀର ଜଳ ସଂକ୍ରାମିତ ହୁଏ ଏବଂ ଗାଁ'କୁ ଏସବୁ ରୋଗ ବ୍ୟାପେ ।

୫ । ପୋଖରୀ ଓ କୂଅମୂଳେ ଥିବା ଗଛରେ ନାନାଦି ପକ୍ଷୀ ବାସ କରି ମଳତ୍ୟାଗ କରିବାରୁ ସେସବୁ ଜଳରେ ପଡ଼େ ଓ ଜଳ ଦୂଷିତ ହୁଏ । ଗଛରୁ ପତ୍ର, ଡାଳ ଆଦି ପଡ଼ି ପାଣିରେ ପଚି ଜଳକୁ ଦୂଷିତ କରେ ।

୬ । ପବନରେ ଧୂଳି, କୁଟା, କାଠି, ଶୁଖିଲା ପତ୍ର, ରୋଗୀର ଶୁଖିଲା ବଳକା, ମଇଳା କନା ଆଦି ଉଡ଼ି ଆସି କୂଅ ପୋଖରୀରେ ପଡ଼ିବାରୁ ସେ ସବୁର ଜଳ ଦୂଷିତ ହୁଏ ।

୭ । ପୋଖରୀରେ ବଣଜଙ୍ଗଲ ମାଡ଼ିଗଲେ ପାଣି ଭିତରକୁ ସୂର୍ଯ୍ୟାଲୋକ ପଶିପାରେ ନାହିଁ । ତଦ୍ୱାରା ଜଳ ଜୀବାଣୁ ମୁକ୍ତ ହୋଇ ନ ପାରି ଦୂଷିତ ହୁଏ । କୂଅ ଭିତରର କନ୍ଦରେ ନାନା ଗଛ ଲତା ଜନ୍ମେ । ସେ ସବୁର ପତ୍ର କୂଅରେ ପଡ଼ିବାରୁ ଜଳ ଦୂଷିତ ହୁଏ ।

୮ । ପୋଖରୀ ଘେରିପାଖରେ ବନ୍ଧ ନ ଥିଲେ ଓ କୂଅର କନ୍ଦ ଭଙ୍ଗି ଯାଇଥିଲେ ବର୍ଷା ପାଣି ଧାରି ଧାରି ହୋଇ ବୋହି ଆସି ପୋଖରୀ ଓ କୂପରେ ପଡ଼େ । ସେଥି ସହିତ ନାନା ଆବର୍ଜନା କୂଅ, ପୋଖରୀରେ ପଡ଼ିବାରୁ ଜଳ ଦୂଷିତ ହୋଇଯାଏ । ଉପରୋକ୍ତ କାରଣରୁ ମଧ୍ୟ ଗୁହାଳ, ପାଇଖାନା ଇତ୍ୟାଦିର ମଇଳାପାଣି ଗଡ଼ି ଆସି କୂଅ ପୋଖରୀରେ ପଡ଼ି ସେ ସବୁର ଜଳ ଦୂଷିତ କରେ ।

୯ । କୂଅ ଅଗଭୀର ହୋଇଥିଲେ ଉପରର ମଇଳା ଜଳ ଭୂଗର୍ଭ ଝରି ଦେଇ କୂଅରେ ପଡ଼ି ଜଳକୁ ଦୂଷିତ କରେ । ନଳ କୂଅରେ ଅତି ଗଭୀରରୁ ଜଳ ଉଠୁଥିବାରୁ ତା'ର ଜଳ ସାଧାରଣତଃ ବିଶୁଦ୍ଧ ।

୧୦ । ମାଟି ଦୋଷରୁ ମଧ୍ୟ ପୋଖରୀ ଓ କୂଅର ଜଳ ସ୍ୱାସ୍ଥ୍ୟ ପକ୍ଷେ ହାନିକର ହୋଇଥାଏ । କେତେକ କୂଅ ପୋଖରୀର ପାଣି



୧—ଅଗଭୀର କୂପ—ଦୂଷିତ ଜଳ କୂପ ଭିତରକୁ ଯାଉଅଛି;
୨—ଗଭୀର କୂପ, ୩—ନଳ କୂପ ।

ଖାରିଆ ଲାଗେ । ସେ ପାଣିରେ ଡାଲି ସିଝେ ନାହିଁ । ମାଟିର ପ୍ରକୃତି ଅନୁସାରେ ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ଧାତବ ଲବଣ ଅଧିକ ପରିମାଣରେ ଥାଏ । ଲୁହା, ତମ୍ବା, ସୀସା ପ୍ରଭୃତି ଧାତବ ପଦାର୍ଥ ଅଧିକ ଥିବା ସ୍ଥାନର ଜଳରେ ସେ ସବୁର ପରିମାଣ ଅଧିକ ହୁଏ । ଏଣୁ କୂଅ, ପୋଖରୀ ଖୋଳିଲା ବେଳେ ବୁଝି ବିଚାରି ସ୍ଥାନ ନିରୂପଣ କରିବା ଆବଶ୍ୟକ ।

**ଦୂଷିତ ଜଳର ଅପକାରିତା**—ବନ୍ଧୁଆ ପୋଖରୀରେ ଗାଧୋଇଲେ ଦେହ କୁଣ୍ଡାଇ ହୁଏ ଓ ଚର୍ମରୋଗ ହୁଏ । ନଦୀ, ପୋଖରୀର ଜଳ କଲେରା, ଆମାଶୟ, ଟାଇଫଏଡ୍ ପ୍ରଭୃତି ରୋଗ ବୀଜାଣୁ ଦ୍ୱାରା ଦୂଷିତ ହୋଇଥିଲେ ସେସବୁର ଜଳ ବ୍ୟବହାର ଦ୍ୱାରା ପୂର୍ବୋକ୍ତ ରୋଗାକ୍ରାନ୍ତ ହୁଏ । ଦୂଷିତ ଜଳ ବ୍ୟବହାର ଦ୍ୱାରା କୃମି ଓ ଅଜୀର୍ଣ୍ଣ ରୋଗ ମଧ୍ୟ ହୋଇଥାଏ ।

**ଜଳ ଦୂଷିତ ନ ହେବାପାଇଁ ବ୍ୟବସ୍ଥା**—ନିମ୍ନଲିଖିତ ବ୍ୟବସ୍ଥା କଲେ ନଦୀ, ପୋଖରୀ ଓ କୂପ ଜଳ ସାଧାରଣତଃ ଦୂଷିତ ହୁଏ ନାହିଁ ।

**ନଦୀ**—

୧ । ନଦୀକୂଳରେ ମଳମୂତ୍ର ତ୍ୟାଗ କରିବ ନାହିଁ । ବର୍ଷାରେ ତାହା ଧୋଇ ହୋଇ ନଦୀରେ ପଡ଼ି ଜଳକୁ ଦୂଷିତ କରେ ।

୨ । ମନୁଷ୍ୟ ବା ପଶୁମାନଙ୍କର ଶବକୁ ନଦୀରେ ଭସାଇ ଦେବ ନାହିଁ ।

୩ । ରୋଗୀର ଲୁଗାପଟା ନଦୀରେ ଧୋଇବ ନାହିଁ ।

୪ । ନଈକୂଳ ବାଲିରେ ମଶାଣି କରିବା ଅନୁଚିତ ।

**ପୋଖରୀ**—

୧ । ପୋଖରୀ ପ୍ରଶସ୍ତ ଓ ଗଭୀର ହେବ ।

୨ । ହୁଡ଼ା ଉଚ୍ଚ ହେଲେ ବର୍ଷା ଦିନେ ବାହାରର ଗୋଳିଆ ପାଣି ପୋଖରୀରେ ପଶିବ ନାହିଁ ।

୩ । ହୁଡ଼ା ଚାରିପାଖ ପରିଷ୍କାର ପରିଚ୍ଛନ୍ନ ରହିବ । ସେଠାରେ ମନୁଷ୍ୟ ବା ପଶୁ ମଳମୂତ୍ର ତ୍ୟାଗ କରିବେ ନାହିଁ ।

୪ । ପୋଖରୀ ଚାରିପଟେ ଲୁହାର ପାଚେରୀ ରହିଲେ ଭଲ, ନଚେତ୍ ମଜବୁତ୍ ବାଡ଼ କରିବ । ତାହାହେଲେ ଗାଈଗୋରୁ ପଶି ଜଳକୁ ଦୂଷିତ କରି ପାରିବେ ନାହିଁ ।

୫ । ପୋଖରୀକୂଳେ ବଡ଼ ଗଛ, ନର୍ଦ୍ଦମା, ମଇଳା ଖାତ, ପାଇଖାନା ଇତ୍ୟାଦି ରହିବ ନାହିଁ ।

୬ । ପୋଖରୀରେ କୌଣସି ଶ୍ରେଣୀର ଲୁଗାପଟା ଧୋଇବେ ନାହିଁ, ଦାନ୍ତ ଘଷିବେ ନାହିଁ ଓ ବାସନ ମାଜିବେ ନାହିଁ । ଛେପ, ଖଙ୍କାର, ଅଇଁଠାପତର ଆଦି ପାଣିକୁ ପକାଇବେ ନାହିଁ । ପୋଖରୀ ଜଳରେ ବୁଡ଼ବୁଡ଼ କରିବା ଓ ଶୌଚ ହେବା ଉଚିତ ନୁହେଁ ।

୭ । ମଣିଷ ଗାଧୋଉଥିବା ପୋଖରୀରେ ପଶୁ ଗାଧୋଇବେ ନାହିଁ ।



ପାନୀୟ ଜଳ ପାଇଁ ସ୍ୱତନ୍ତ୍ର ପୋଖରୀ

୮ । ଯେଉଁ ପୋଖରୀର ପାଣି ପିଇବା ପାଇଁ ବ୍ୟବହୃତ ହୁଏ ତାହା ଅନ୍ୟ କୌଣସି କାର୍ଯ୍ୟ ଲାଗି ଯଥା:—ଗାଧୋଇବା, ଗୋରୁ ଧୋଇବା ଇତ୍ୟାଦି ପାଇଁ ବ୍ୟବହୃତ ହେବ ନାହିଁ । ସେଥିରୁ ଜଳ ସଂଗ୍ରହ କଲାବେଳେ କେବଳ ପରିଷ୍କୃତ ପାତ୍ର ବ୍ୟବହୃତ ହେବ ।

୯ । ବର୍ଷେ ଦୁଇ ବର୍ଷରେ ଥରେ ପୋଖରୀ ଶୁଖାଇ ପଙ୍କ କାଢ଼ିଦେବ ଏବଂ ଲୁଣ ଓ କଲିଚୂନ ପକାଇବ ।

**କୂପ—**

୧ । ଶୁଖିଲା ଓ ଉଚ୍ଚ ସ୍ଥାନରେ କୂଅ ଖୋଳା ହେବ । ତାହା ଯଥେଷ୍ଟ ଗଭୀର ହେବା ଉଚିତ ।

୨ । ମାଟିତଳ ପଥରରେ ପକ୍କା ବାନ୍ଧିଲେ ଭଲ । ତହାର ବାହାରର ମଇଳା ପାଣି ମାଟି ଭେଦ କୂଅକୁ ଝରେ ନାହିଁ ।

୩ । କୂଅ ପାଖରେ ଗୁହାଳ, ଖତଗଦା, ପାଇଖାନା, ନର୍ଦ୍ଦମା ଆଦି ରହିବ ନାହିଁ ।

୪ । କୂଅ ମୂଳର ଜଳ ଯେପରି ଦୂରକୁ ଗଡ଼ିଯାଇ ପାରିବ ତାର ବ୍ୟବସ୍ଥା ହେବ । କୂଅ ଚାରିପାଖରେ ପକ୍କା ଚଟାଣ କରି ସେଠାରୁ ଅନ୍ତତଃ ସାତ ମିଟର ଯାଏ ପକ୍କା ନାଳୁଆ କଲେ ଭଲ ।

୫ । କୂଅର ଅତି ନିକଟରେ ଗଛ ଲଗାଇବ ନାହିଁ ।

୬ । କୂଅ କୂଳେ କେହି ଗାଧୋଇବେ ନାହିଁ, ଲୁଗା କାଚିବେ ନାହିଁ ଓ ବାସନ ଧୋଇବେ ନାହିଁ ।

୭ । ଯେ କୌଣସି ପାତ୍ର କୂଅରେ ବୁଡ଼ାଇ ପାଣି ଉଠାଇବା ଭଲ ନୁହେଁ । ନିର୍ଦ୍ଦିଷ୍ଟ ପରିଷ୍କୃତ ଦଉଡ଼ି ଓ ପାତ୍ର କୂଅରେ ବୁଡ଼ା ହେବା ଉଚିତ ।

୮ । ପ୍ରତିବର୍ଷ ଖରାଦିନେ କୂଅ ଉଛୁଳା ହେବ ଏବଂ ସେଥିରେ ଲୁଣ ଓ କଳିଚୂନ ପକା ହେବ ।

**ପାନୀୟ ଜଳ ବିଶୋଧନ—**ପୂର୍ବେ କୁହା ଯାଇଅଛି ଦୂଷିତ ଜଳ ପାନ କଲେ ନାନା ରୋଗ ଜାତ ହୁଏ । ଜଳରୁ ନିମ୍ନ-ଲିଖିତ ପ୍ରଣାଳୀମାନଙ୍କ ଦ୍ୱାରା ପାନ-ଉପଯୋଗୀ କରାଯାଇପାରେ—

୧ । ଛାଣିବା ଦ୍ୱାରା—ଫିଲ୍‌ଟର ବା ଛାଣିବା ଯନ୍ତ୍ରରେ ଜଳ ଛାଣିଲେ ତାହା ଅନେକ ପରିମାଣରେ ବିଶୋଧିତ ହୁଏ । କାଠ ବା ବାଉଁଶର ଚାରିଟି ଥାକରେ ଚାରିଟି ମାଠିଆ ଥାଏ (ଚିତ୍ର ଦେଖ) । ସବାତଳ ମାଠିଆ ଛଡ଼ା ସବୁ ମାଠିଆର ତଳ କଣା । ଏହି କଣା ବାଟେ ଖଣ୍ଡିଏ କରି ଲୁଗା ଦିଆଯାଇଥାଏ । ଦ୍ୱିତୀୟ ମାଠିଆରେ ଅଙ୍ଗାର ଓ ତୃତୀୟ ମାଠିଆରେ ପରିଷ୍କାର ସରୁ ବାଲି ଥାଏ । କୂପ ପୋଖରୀର ଜଳକୁ ଆଣି ଛାଣି ପ୍ରଥମ ମାଠିଆରେ ରଖ । ସେଥିରୁ ଟୋପା ଟୋପା ହୋଇ ପାଣି ଝରି ଦ୍ୱିତୀୟ ମାଠିଆ, ତା'ପରେ ତୃତୀୟ ମାଠିଆ ଦେଇ ଚତୁର୍ଥ ମାଠିଆରେ ସଂଗୃହୀତ ହେବ । ଶେଷ ମାଠିଆର ଜଳ ପାନ ପାଇଁ ଉପଯୋଗୀ । ଏ ପ୍ରଣାଳୀରେ ଜଳ ବୀଜାଣୁ-ମୁକ୍ତ ହୁଏ ନାହିଁ । ତେଣୁ ସଂକ୍ରାମକ ରୋଗ ଲାଗିଥିବା ବେଳେ, ଜଳକୁ ଫୁଟାଇ ଉପରେ ଲେଖାଥିବା ଉପାୟରେ ଛାଣିବା ଭଲ । ମଧ୍ୟେ ମଧ୍ୟେ ଦ୍ୱିତୀୟ ମାଠିଆର କୋଇଲା ଓ ତୃତୀୟ ମାଠିଆର ବାଲି ବଦଳାଇବା ଆବଶ୍ୟକ । ନ ହେଲେ ମଇଳା ଜମି ଯିବାରୁ ପାଣି ଝରେ ନାହିଁ ।



ଫିଲ୍‌ଟର ଯନ୍ତ୍ର

୨ । ଫୁଟା ହେବା ଦ୍ୱାରା—ପାଣିକୁ ଫୁଟାଇ ଦେଲେ ତାହା ବୀଜାଣୁମୁକ୍ତ ହୁଏ । ସେହି ଜଳକୁ ଛାଣି ଏକ ପରିଷ୍କାର ମାଠିଆରେ ରଖି ପାନ କରାଯାଇପାରେ ।

**୩ । ରସାୟନିକ ବିଶୋଧନ ବ୍ୟବହାର ଦ୍ୱାରା**—ଜଳକୁ ମଝେ ମଝେ ଶୋଧନ କରିବାପାଇଁ, ବିଶେଷ କରି କଲେରା, ଟାଇଫଏଡ଼୍ ଆଦି ସଂକ୍ରାମକ ରୋଗ ଲାଗିଥିଲାବେଳେ, ପଟାସ୍ (ପୋଟାସିୟମ ପାରମାଙ୍ଗାନେଟ୍) ବା ବ୍ଲିଚିଂ ପାଉଡ଼ର କୂଅରେ ପକାଇବ । ଚବିଶ ଘଣ୍ଟା ପର୍ଯ୍ୟନ୍ତ ସେହିଜଳ ରନ୍ଧାରନ୍ଧି ଓ ପିଆପିଇ ପାଇଁ ବ୍ୟବହାର କରିବ ନାହିଁ ।

**ପରିଷ୍କାର ପରିଚ୍ଛନ୍ନତା**—ପାନୀୟ ଜଳକୁ ପରିଷ୍କାର ପାତ୍ରରେ ରଖିବ ଓ ସର୍ବଦା ଘୋଡ଼ାଇ ରଖିବ । ପାନୀୟ ଜଳରେ ହାତ ବୁଡ଼ାଇବା ବା ଅପରିଷ୍କୃତ ଗିଲାସ ବୁଡ଼ାଇ ମାଠିଆରୁ ପାଣି କାଢ଼ିବା ଦ୍ୱାରା ତାହା ଦୂଷିତ ହୁଏ ।

## ପ୍ରଶ୍ନ

୧ । କୂଅ ପୋଖରୀର ଜଳ କିପରି ଦୂଷିତ ହୁଏ ? ଦୂଷିତ ଜଳ ପାନ କଲେ କି ଅପକାର ହୁଏ ?

୨ । ଗୋଟିଏ ଆଦର୍ଶ ପୋଖରୀ କିପରି ହେବା ଉଚିତ ? କି କି ଉପାୟରେ ପାନୀୟ ଜଳକୁ ବିଶୁଦ୍ଧ କରାଯାଏ ?

୩ । କୂପଜଳ କିପରି ଦୂଷିତ ହୁଏ ? କୂପଜଳ ଦୂଷିତ ନ ହେବା ପାଇଁ କି କି ବ୍ୟବସ୍ଥା କରିବ ?

୪ । ପୋଖରୀ ଖୋଳାଇବା ଆଗରୁ କି କି ବିଷୟ ପ୍ରତି ଦୃଷ୍ଟି ଦିଆଯିବା ଦରକାର ?

## ପଞ୍ଚମ ଅଧ୍ୟାୟ

## ଗୃହ ବିଜ୍ଞାନ

**ବାସଗୃହ**—ସ୍ୱାସ୍ଥ୍ୟଠାରୁ ବଡ଼ ସମ୍ପଦ ନାହିଁ । ସ୍ୱାସ୍ଥ୍ୟ ଭଲ ଥିଲେ ସବୁ ଭଲ; ସ୍ୱାସ୍ଥ୍ୟ ଖରାପ ହେଲେ ସବୁ ବୃଥା । ଧନ ଦଉଲତ ଥିଲେ ମଧ୍ୟ ସ୍ୱାସ୍ଥ୍ୟ ନ ଥିଲେ ସେ ସବୁ ମଣିଷକୁ ଆନନ୍ଦ ଦେଇପାରେ ନାହିଁ । ଅଧିକାଂଶ ସମୟ ଆମର ବାସଗୃହରେ କଟେ । ଏଣୁ ବାସଗୃହ ଯେପରି ବାସର ଉପଯୁକ୍ତ ହେବ ସେଥିପ୍ରତି ଦୃଷ୍ଟି ଦେବା ଆବଶ୍ୟକ । କୌଣସି ସ୍ଥାନରେ ଘର ତୋଳିବା ପୂର୍ବରୁ ତିନୋଟି ପ୍ରଧାନ ବିଷୟ ପ୍ରତି ଲକ୍ଷ୍ୟ ରଖିବାକୁ ହେବ । ଯଥା— (୧) ସ୍ଥାନ ନିରୂପଣ, ଅର୍ଥାତ୍ କପରି ସ୍ଥାନରେ ଘର ତୋଳିବ, (୨) ଘରର ଗଠନ ଓ (୩) ଘରର ଆବର୍ଜନା ସ୍ଥାନାନ୍ତରୀକରଣ ।

**ସ୍ଥାନ ନିରୂପଣ**—ଉଚ୍ଚ ଓ ଶୁଷ୍କ ଭୂମିରେ ଘର ତୋଳିବା ଉଚିତ । ଟାଙ୍ଗରା ମାଟି, ଖଡ଼ିମାଟି ଓ ବାଲି-ପଥର ମାଟି ଏଥିପାଇଁ ଉପଯୁକ୍ତ । ବାଲିଆ ମାଟିରେ ଘର କଲେ ଖରାଦିନେ ଖୁବ୍ ଗରମ ଓ ଜାଡ଼ ଦିନେ ଖୁବ୍ ଶୀତ ହୁଏ । ମଟାଳ ଜମିରେ ଘର କଲେ ଘର ଓଦାଏ । ମଇଳା ପକା ହୋଇ ପୋତା ହୋଇଥିବା ସ୍ଥାନରେ କୋଡ଼ିଏ ବର୍ଷ ଭିତରେ ଘର ନ କଲେ ଭଲ । କଳକାରଖାନା, ଇଟାଭାଟି, ଧୂଳିପୂର୍ଣ୍ଣ ରାସ୍ତା, ମଶାଣି, ମଇଳାଖାତ, ଖାଲ ଇତ୍ୟାଦି ନିକଟରେ ଘର ତୋଳିବ ନାହିଁ । ପୋଖରୀ, ନଦୀ ଓ ହ୍ରଦ ବା ସମୁଦ୍ରର ଅତି ନିକଟରେ ଘର କରିବା ଉଚିତ ନୁହେଁ । ଘରର ଚାରି ପାଖ ଯେପରି ଖୋଲା ରହେ, ସେଥିପ୍ରତି ଦୃଷ୍ଟି ଦେବ । ଲାଗି ଘର ସହିତ ଲଗାଇ ଘର କରିବ ନାହିଁ ।

**ଘରର ଗଠନ**—ଘର ଆରମ୍ଭ କରିବା ପୂର୍ବରୁ ଘରର ଏକ ନକ୍ସା ବା ମଡ଼େଲ ତିଆରି କରିବ । ଏନବେଳେ ଘର ଭିତରକୁ ଯେପରି ସୂର୍ଯ୍ୟାଲୋକ ଭଲରୂପେ ପଶି ପାରିବ ଓ ସଦାବେଳେ ଉତ୍ତମରୂପେ ବାୟୁ ଚଳାଚଳ ହୋଇପାରିବ ସେଥିପ୍ରତି ନଜର ଦେବ । ଦକ୍ଷିଣକୁ ବା ପୂର୍ବକୁ ମୁହାଁ କଲେ ଘର ଆଲୋକ ଓ ପବନ



ଆଦର୍ଶ ବାସଗୃହ

ଭଲରୂପେ ପାଇପାରେ । ଘରଭିତରକୁ ଯଥେଷ୍ଟ ଆଲୁଅ ଓ ପବନ ଅବାଧରେ ପଶି ପାରିବାପାଇଁ ବଡ଼ ବଡ଼ ଦ୍ୱାର, ଝରକା ମୁହାଁମୁହିଁ ବସାଇବ । ଘର ପାଖରେ ବଡ଼ ଗଛ ରହିଲେ ଘର ଯଥେଷ୍ଟ ପରିମାଣରେ ଆଲୋକ ଓ ପବନ ପାଇପାରେ ନାହିଁ । ଘରର କାନ୍ଥ ଅନ୍ତତଃ ୩୦୪ ମିଲିମିଟର ମୋଟା ହେବା ଦରକାର । ଛାତ ୩½ ମିଟରରୁ ୪½ ମିଟର ଉଚ୍ଚା ହେଲେ ଖରାଦିନେ ଘର ଥଣ୍ଡା ରହେ । ଚଟାଣ ସିମେଣ୍ଟରେ ହେଲେ ଭଲ । ଘରର ନର୍ଦ୍ଦମା ଜଳକୁ ବାଣ୍ଡ-ପଟକୁ ନ ଛାଡ଼ି ପଛପଟକୁ ଛାଡ଼ିବା ଉଚିତ । ମଇଳା ପାଣି ଯେପରି ଗୃହଠାରୁ ଦୂରରେ ପଡ଼େ ସେଥିପ୍ରତି ଦୃଷ୍ଟି ଦେବ । ପାଇଖାନା,

ରୋଷାଇଘର ଓ ଶୋଇବା ଘରଠାରୁ ଦୂରରେ ହେବ ଏବଂ କଦାପି ଦକ୍ଷିଣ ବା ପୂର୍ବପଟେ ହେବ ନାହିଁ । ଶୋଇବା ଘର ରୋଷାଇ ଘରଠାରୁ ଦୂରରେ ହେବ ।

ବର୍ଷାଜଳ ଘର ଚାରିପଟେ ଯେପରି ଜମି ନ ରହେ ସେଥିପ୍ରତି ଦୃଷ୍ଟି ଦେବ । କଞ୍ଚା ଛଡ଼ାରେ ଘର ଚାରିପଟେ ଗଛ ଲଗାଇଲେ ସେସବୁ ଘରକୁ ଖରାଦିନ ଥଣ୍ଡା ରଖନ୍ତି, ବତାସରୁ ରକ୍ଷା କରନ୍ତି ଓ ସ୍ଥାନ ଶୁଖିଲା ରହେ ।



ଆଦର୍ଶ ମଇଳା ଖାତ

ଗୃହାଳ ବାସଗୃହଠାରୁ ଦୂରରେ ହେବ । ଗୋବର, ଘରର ଅଳିଆ ଓ ଅନ୍ୟାନ୍ୟ ଆବର୍ଜନାକୁ ଘରଠାରୁ ଦୂରରେ ଛୋଟ ଛୋଟ ଖାତରେ ପକାଇ ୭୫ରୁ ୧୦୦ ମିଲିମିଟର ବହଳରେ ମାଟି ଘୋଡ଼ାଇ ଦେଲେ ଅଳ୍ପ ଦିନ ଭିତରେ ତାହା ଖତ ହୋଇଯାଏ ଓ ମାଛି ଡୁଅନ୍ତି ନାହିଁ ।

ଭଳ ପାଇଖାନା କଲେ ଭଲ । ଗ୍ରାମମାନଙ୍କରେ ବରପାଲି ପାଇଖାନା ନହେଲେ ଗର୍ତ୍ତ ପାଇଖାନା କରାଯାଇପାରେ । ଗର୍ତ୍ତ-ପାଇଖାନାରେ ପ୍ରାୟ ୩½ ମିଟର ଗଭୀର ଗୋଲ ଗାତଟିଏ ଖୋଳି ସେଥିରେ ମଳତ୍ୟାଗ କରାଯାଏ । ପ୍ରତ୍ୟେକ ବ୍ୟବହାର ପରେ କିଛି ମାଟି ପକାଇ ମଳକୁ ଘୋଡ଼ାଇ ଦିଆଯାଏ । ଗର୍ତ୍ତ ପୂରି ଆସିଲେ ତାକୁ ପୋତି ଦେଇ ଅନ୍ୟ ଏକ ସ୍ଥାନରେ ଆଉ ଗୋଟିଏ ଗର୍ତ୍ତ କରାଯାଏ ।

୨

ପରିଷ୍କାର ପରିଚ୍ଛନ୍ନତା—ଭଲ ବାସଗୃହଟିଏ ତୋଳି ଯଦି ତାର ଉପଯୁକ୍ତ ଯତ୍ନ ନ ନିଆଯାଏ, ତେବେ ତାହା ବାସର ଅନୁପଯୋଗୀ ହୋଇ ଉଠେ । ଏଣୁ ନିମ୍ନଲିଖିତ ବିଷୟଗୁଡ଼ିକ ପ୍ରତି ଧ୍ୟାନ ଦେବ ।

୧ । ପ୍ରତିଦିନ ଘରର ଝରକା କବାଟ ଖୋଲିବ । ତାହା ହେଲେ ସୂର୍ଯ୍ୟାଲୋକ ଓ ବାୟୁ ଘର ଭିତରେ ପ୍ରବେଶ କରି ପାରିବ । ଝରକା ସବୁବେଳେ ଖୋଲା ରହି ପାରିଲେ ଉତ୍ତମ ।

୨ । ପ୍ରତିଦିନ ଅନ୍ତତଃ ଦୁଇଥର ଘର ଝାଡ଼ୁ କରିବ ।

୩ । ମାଟିଘର ହୋଇଥିଲେ ପ୍ରତିଦିନ ଥରେ ଲିପାହେବା ଦରକାର । ପକ୍କା ଚଟାଣ ହୋଇଥିଲେ ପ୍ରତିଦିନ ଫିନାଇଲ ପାଣିରେ ପୋଛା ବା ଧୂଆ ହେବ ।

୪ । ଘରେ ବା ବାହାରେ ଏଠି ସେଠି ଛେପ, ଖଙ୍କାର, ସିଙ୍ଘାଣି, ପାନପିକ ଆଦି ପକାଇବ ନାହିଁ ।

୫ । ଘରର ଚାରିପାଖ ପରିଷ୍କାର ରଖିବ ।

୬ । ଘରର ନର୍ଦ୍ଦମା ପ୍ରତିଦିନ ସଫା ହେବ ଓ ଫିନାଇଲ ପାଣି ପଡ଼ିବ ।

୭ । ପକ୍କା ପାଇଖାନା ହୋଇଥିଲେ ତାହା ପ୍ରତିଦିନ ସଫା ହେବ ଓ ଫିନାଇଲ ଛାଣ୍ଟି ପଡ଼ିବ ।

୮ । ଘରେ ପ୍ରତି ସନ୍ଧ୍ୟାରେ ଝୁଣାଧୂଆଁ ଦେବା ଭଲ । ତଦ୍ୱାରା ରୋଗ ବୀଜାଣୁ ନଷ୍ଟ ହୁଅନ୍ତି ଓ ବାୟୁ ଶୋଧିତ ହୁଏ ।

୯ । ଘରର ଆବର୍ଜନା ଯଥା—ଦାନ୍ତକାଠି, ଅଇଁଠାପତ୍ର, ପତ୍ରବାଖ୍ୟେପା, ମାଛକାଣ୍ଟ, ଧୂଳିମଳି ଆଦିକୁ ନେଇ ଦୂରରେ ଛୋଟ ଛୋଟ ଖାତରେ ପୋତି ପକାଇବ ।

୧୦ । ଶୋଇବା ଓ ପଢ଼ିବା ଘରେ ଗୁଡ଼ାଏ ଆସବାବ ଓ ଜିନିଷପତ୍ର ରଖିବ ନାହିଁ । ତଦ୍ୱାରା ଧୂଳି ଜମେ ଓ ଭଲରୂପେ ବାୟୁ ଚଳାଚଳ ହୋଇପାରେ ନାହିଁ ।

୧୧ । ଘରର ଓ ବାରଣ୍ଡାରେ ହେଉଥିବା ବୁଢ଼ିଆଣୀ ଜାଲକୁ ମଝିରେ ମଝିରେ ସଫା କରୁଥିବ । ଘର ଗୁଡ଼ିକରେ ଘରଚଟିଆ ବସାକଲେ ଓଲଟି ପକାଇବ ।

୧୨ । ପ୍ରତି ଦୁଇ ତିନି ମାସରେ ଥରେ ଲେଖାଏଁ ଘରେ ଡି. ଡି. ଟି. ବା ଗାମାକ୍ସିନ୍ ପଡ଼ିପାରିଲେ ଭଲ ।

୧୩ । ବର୍ଷରେ ଅନ୍ତତଃ ଥରେ ଘର ଭିତରେ କାନ୍ଥ ଘଷା ହୋଇ ଚୂନ ଧଉଳା ହେବ । ତଦ୍ୱାରା ଘର ସଫା ହୁଏ ଓ କାନ୍ଥରେ ଲାଗି ରହିଥିବା ରୋଗ ବୀଜାଣୁ ନଷ୍ଟ ହୁଅନ୍ତି । ମାଟିର ତଟାଣ ହୋଇଥିଲେ ବର୍ଷରେ ଦୁଇଥର ଖୋଳା ହୋଇ ଲିପା ହେଲେ ଭଲ ।

## ସୂର୍ଯ୍ୟାଲୋକ ଓ ବାୟୁ ଚଳାଚଳ

ସୂର୍ଯ୍ୟାଲୋକ—ପୂର୍ବେ କୁହାଯାଇଅଛି, ଘର ତୋଳିଲାବେଳେ ଘର ଭିତରକୁ ଯେପରି ଯଥେଷ୍ଟ ସୂର୍ଯ୍ୟାଲୋକ ପଶି ପାରିବ ଓ ଉତ୍ତମ ବାୟୁ ସଞ୍ଚାଳନ ହେବ ସେଥିପ୍ରତି ଦୃଷ୍ଟି ଦେବ । ସୂର୍ଯ୍ୟାଲୋକ

ବୀଜାଣୁମାନଙ୍କୁ ନାଶକରେ । ସକାଳର କଅଁଳ ଖରା ଓ ଉପର ବେଳାର ସୂର୍ଯ୍ୟାଲୋକ ଶରୀରପାଇଁ ଉପକାରୀ । ସେଥିପାଇଁ ଶିଶୁମାନଙ୍କ ଦେହ'ର ତେଲ ଲଗାଇ କଅଁଳ ଖରାରେ ଶୁଆନ୍ତୁ । ତଦ୍ୱାରା ସେମାନଙ୍କର ସ୍ୱାସ୍ଥ୍ୟ ଭଲ ରହେ ଓ ରୋଗ ପ୍ରତିରୋଧ ଶକ୍ତି ବଢ଼େ । ଆହୁରି ମଧ୍ୟ ସୂର୍ଯ୍ୟକିରଣ ଦୁର୍ଗନ୍ଧ ନାଶ କରେ । ଏଣୁ ସକାଳେ ଓ ଉପରବେଳା ବାସଗୃହ ଯେପରି ଭଲ ଖରା ପାଇ ପାରିବ ସେଥିପ୍ରତି ଦୃଷ୍ଟି ଦେବ । ସକାଳେ ଓ ସନ୍ଧ୍ୟାରେ ସୂର୍ଯ୍ୟକିରଣରେ ବୁଲିବା ସ୍ୱାସ୍ଥ୍ୟ ପକ୍ଷେ ହିତକର । ପ୍ରତିଦିନ ଶେଯ, ବିଛଣା ଓ ଲୁଗାପଟା ଖରାରେ ଦେବ ।

**ବାୟୁ ଚଳାଚଳ**—ବିଶୁଦ୍ଧ ବାୟୁ ଶରୀରର ଅତ୍ୟନ୍ତ ଉପକାରୀ । ଏହା ସେବନ କଲେ ରକ୍ତ ପରିଷ୍କୃତ ହୁଏ, ମନ ପ୍ରଫୁଲ୍ଲ ରହେ ଓ କାର୍ଯ୍ୟ କରିବାକୁ ଉତ୍ସାହ ଆସେ । ଯେଉଁ କୋଠରୀରେ ବାୟୁ ଚଳାଚଳ ଭଲ ନୁହେଁ, ସେ ଘରେ ବସି ପଢ଼ିଲେ ବା କାମ କଲେ ଅଳ୍ପ ସମୟ ପରେ କ୍ଳାନ୍ତ ଅନୁଭବ ହୁଏ ଓ ମୁଣ୍ଡ ଧରେ । ଏଣୁ ଘର ଭିତରେ ଯେପରି ବିଶୁଦ୍ଧ ବାୟୁ ଯାତାୟାତ କରିପାରେ ସେଥିପ୍ରତି ଦୃଷ୍ଟି ଦେବ । ଶୀତଦିନେ ଝରକା କବାଟ ବନ୍ଦକରି ବସିବା ଉଚିତ ନୁହେଁ । ଘରଠାରୁ ଅଳ୍ପ ଦୂରରେ ନିମ୍ବଗଛ ଥିଲେ ତାହା ବାୟୁକୁ ବିଶୁଦ୍ଧ କରେ । ଘରର ପ୍ରଧାନ କୋଠରୀଗୁଡ଼ିକର ଦ୍ୱାର ଓ ଝରକା ଦକ୍ଷିଣମୁହାଁ ହେଲେ ବାୟୁ ଚଳାଚଳ ଭଲ ହୁଏ ।

**ସଲ୍‌ସଲିଆ ସ୍ଥାନ**—ପୂର୍ବେ କୁହାଯାଇଅଛି, ଯେଉଁ ଜମିର ମାଟି ମଟାଳ ସେଠାରେ ଘର କରିବ ନାହିଁ । ଏ ପ୍ରକାର ମାଟିରୁ ସହଜରେ ପାଣି ଶୁଖେ ନାହିଁ । ଘର ସ୍ଥଳରେ ପାଣି ଜମିଲେ ଘର

ସନ୍ତାଏ । ସନ୍ତସନ୍ତିଆ ଘରେ ରହିଲେ ଅଣ୍ଡା ଧରେ ଏବଂ ସର୍ଦ୍ଦି, କାଶ, କଫ, ନିମୋନିଆ ପ୍ରଭୃତି ରୋଗ ହୁଏ । ଘର ସୂରପାଖରେ ପାଣି ଜମିଲେ ବାୟୁରେ ଜଳୀୟ ବାଷ୍ପର ପରିମାଣ ବଢ଼ି ସ୍ୱାସ୍ଥ୍ୟ ହାନି କରେ । ଘରର ଗୁଡ ଉପରକୁ ଗଡ଼ାଣିଆ କରିବ ଏବଂ ପାଣି ଯେପରି ଗୁଡରେ ନ ଜମେ ସେଥିପ୍ରତି ଦୃଷ୍ଟି ଦେବ । ବର୍ଷାଜଳ ଘର ପାଖରେ ନ ଜମି ଯେପରି ବୋହିଯିବ ତା'ର ବ୍ୟବସ୍ଥା କରିବ ।

**ଆବଦ୍ଧ ଜଳ**—ଘର ପାଖରେ ବର୍ଷା ପାଣି ଜମିଲେ ବାୟୁ ଆର୍ଦ୍ର ହୁଏ ଓ ସେହି ବାୟୁ ସେବନ ଦ୍ୱାରା ସ୍ୱାସ୍ଥ୍ୟ ହାନି ହୁଏ । ଆବଦ୍ଧ ଜଳରେ ମଶା ଅଣ୍ଡା ଦିଅନ୍ତି ଓ ଘର ଭିତରେ ସେମାନଙ୍କର ଦୌରାତ୍ମ୍ୟରେ ରହି ହୁଏ ନାହିଁ । ଘର ପାଖରେ ନଳାପାଣି ଓ ବର୍ଷାପାଣି ଯେପରି ଜମି ନ ରହେ ସେଥିପ୍ରତି ଦୃଷ୍ଟି ଦିଆଯିବା ଆବଶ୍ୟକ । ଘର ପାଖରେ ଥିବା ଖାଲ ଜମିକୁ ପୋତି ପକାଇବ, ନଚେତ୍ ସେଠାରେ ଜମା ହେଉଥିବା ଜଳ ଯେପରି ବୋହି ଚାଲିଯାଏ ତା'ର ବ୍ୟବସ୍ଥା କରିବ । କର୍ଦ୍ଦମା ଜଳ ଓ ଖାଲ ଜମିରେ ଜମିଥିବା ଜଳରେ କିରାସିନି, ଡି. ଡି. ଟି. ଇତ୍ୟାଦି ପକାଇଲେ ମଶା ଓ ଅନ୍ୟାନ୍ୟ ପୋକଯୋକ ମରିଯାନ୍ତି ।

**ମାଛି**—ବାସଗୃହର କେତେଗୁଡ଼ିଏ ଶତ୍ରୁ ଅଛନ୍ତି, ଯଥା—ମାଛି, ମଶା, ଛାରପୋକ, ଉଈ, ମୂଷା ଇତ୍ୟାଦି । ଏମାନଙ୍କ ଉତ୍ପାତରେ ମଣିଷ ବ୍ୟତିବ୍ୟସ୍ତ ହୁଏ ।

ସାଧାରଣତଃ ଏପ୍ରିଲଠାରୁ ଅକ୍ଟୋବର ମାସ ଭିତରେ ମାଛିମାନେ ଅଧିକ ସଂଖ୍ୟାରେ ଦେଖାଯାନ୍ତି । ଖତଗଦା, କର୍ଦ୍ଦମା ଓ ପଚାସଢ଼ା ପଦାର୍ଥରେ ଏମାନେ ଅଣ୍ଡା ଦିଅନ୍ତି । ମାଛିମାନେ ଅନେକ ରୋଗ ବୀଜାଣୁ ବହନ କରନ୍ତି । ହଇଜା, ଆମାଶୟ, *ଟାଇଫଏଡ୍

ଅନ୍ୟ ରୋଗୀର ମଳ, ମୂତ୍ର, କଫ, ବାନ୍ତି ଆଦିରେ ମାଛି ବସିଲେ ରୋଗ ବୀଜାଣୁ ସେମାନଙ୍କର ଗୋଡ଼, ଡେଣା ଓ ପାଟିରେ ଲାଗିଯାନ୍ତି । ସେହି ମାଛି ଉଡ଼ିଯାଇ ଖାଦ୍ୟ ପଦାର୍ଥରେ ବସିଲେ ଖାଦ୍ୟ ସଂକ୍ରମିତ ହୁଏ । ଅନ୍ୟର ମଧ୍ୟ ମାଛି ପଚା ସଢ଼ା ଓ ରୋଗବୀଜାଣୁ ଥିବା ଖାଦ୍ୟ



ମାଛି ଦ୍ୱାରା ବୀଜାଣୁ ବିସ୍ତାର

ଖାଇ ଆସି ଆମର ଖାଦ୍ୟ ଉପରେ ବାନ୍ତି କରେ ଓ ମଳତ୍ୟାଗ କରେ । ତଦ୍ୱାରା ଖାଦ୍ୟ ଦୂଷିତ ହୁଏ । ଦୂଷିତ ଖାଦ୍ୟ ମନୁଷ୍ୟଲୋକ ଖାଇ ରୋଗାକ୍ରାନ୍ତ ହୁଅନ୍ତି । ରୋଗ ବୀଜାଣୁ ବହନ କରୁଥିବା ମାଛି ଆମର ଆଖି, ଓଠ ଓ ଘା' ଇତ୍ୟାଦିରେ ବସିଲେ ରୋଗ-ବୀଜାଣୁ ଆମ ଶରୀରରେ ପ୍ରବେଶ କରନ୍ତି ।

**ମାଛିଙ୍କୁ ଉପଦ୍ରବ ଦୂର କରିବ** —ଆମର ଘରୁ ମାଛିଙ୍କୁ ଦୂର କରିବା ପାଇଁ ନିମ୍ନଲିଖିତ ବ୍ୟବସ୍ଥା ପାଳନ କରିବ—

୧ । ଖାଦ୍ୟ ପଦାର୍ଥକୁ ଘୋଡ଼ାଇ ରଖିବ ।

୨ । ଖାଇଲାବେଳେ ମାଛି ଯେପରି ଖାଦ୍ୟରେ ନ ବସନ୍ତି, ସେଥିପ୍ରତି ଦୃଷ୍ଟି ଦେବ । ଏଥିପାଇଁ ପଙ୍ଖା ବ୍ୟବହାର କରିବା ଭଲ ।

୩ । ପ୍ରତିଦିନ ଘରର ଚଟାଣ ଓ ବାରଣ୍ଡାକୁ ଫିନାଇଲ ପାଣିରେ ପୋଛିବ ବା ଧୋଇବ ।

୪ । ନର୍ଦ୍ଦମା, ପାଇଖାନା, ଗୁହାଳ ଆଦି ପ୍ରତିଦିନ ସଫା ହେବ ଓ ଫିନାଇଲ ପାଣି ପଡ଼ିବ ।

୫ । ଘର, ଅଗଣା, ପାଇଖାନା, ମଇଳାଖାତ ଇତ୍ୟାଦିରେ ମଧ୍ୟେ ମଧ୍ୟେ ଡି. ଡି. ଟି. ପକାଇବ ।

୬ । ଯେଉଁଠି ସେଉଠି ଛେପ, ଖଙ୍କାର, ପରିବାସ୍ତୁପ ଇତ୍ୟାଦି ପକାଇବ ନାହିଁ ।

୭ । ଘରେ ପଚ୍ଚା ସଢ଼ା ଜିନିଷ ରଖିବ ନାହିଁ ।

୮ । ଗୋବର ଓ ଅଳିଆକୁ ଘରଠାରୁ ଦୂରରେ ଗ୍ରେଞ୍ଚ ଗ୍ରେଞ୍ଚ ଖାତରେ ପୋତି ପକାଇବ ।

୯ । ରୋଗୀର ମଳ, ମୂତ୍ର, ବାନ୍ତି, ଝାଡ଼ା ଇତ୍ୟାଦିକୁ ପୋତି ଦେବ ବା ପୋଡ଼ି ଦେବ ।

୧୦ । ଦେହର କ୍ଷତ, ଆଖି, ପାଟି ପ୍ରଭୃତିରେ ଯେପରି ମାଛି ନ ବସନ୍ତି ସେଥିପ୍ରତି ଦୃଷ୍ଟି ଦେବ ।

୧୧ । ରୋଷାଇ ଘର ଓ ଖାଇବା ଘରର ଝରକା ଓ କବାଟରେ ସରୁ ତାର ଜାଲି ଦେଲେ ମାଛି ଓ ଅନ୍ୟାନ୍ୟ କୀଟ ପଶିପାରନ୍ତି ନାହିଁ ।

**ମଶା**—ମଶା ମନୁଷ୍ୟମାନଙ୍କର ଏକ ପ୍ରଧାନ ଶତ୍ରୁ । ଏମାନଙ୍କ ଯୋଗୁ ମେଲେରିଆ, କାଳଜ୍ୱର ଆଦି ରୋଗ ହୋଇଥାଏ । ଆବଦ୍ଧ ଜଳରେ ମଶା ଅଣ୍ଡା ଦିଅନ୍ତି । ବଲ୍ଲଭଦଳ ଭରା ପୋଖରୀ, ନାଳ, ନର୍ଦ୍ଦମା ଏପରିକି ସନ୍ତସନ୍ତଆ ମାଟିରେ ସେମାନେ ଅଣ୍ଡା



କାଳଜ୍ୱର ଓ ମେଲେରିଆ ରୋଗବାହକ ମଶା

ଦେବାର ଦେଖାଯାଏ । ଟିଣ, କୁଣ୍ଡ, ଭଙ୍ଗାକଳସୀ, ବେ'ଭଲ, ସରେଇ, ସୁରେଇ—ଯେଉଁଠି ପାଣି କେଣୀ ଦିନ ରହୁଗଲ ସେଥିରେ ମଶାର ଛୁଆ ପଡ଼ିବାର ଦେଖିବ । ବିଶେଷତଃ, ବର୍ଷାଦିନେ ନାନାସ୍ଥାନରେ ପାଣି ଜମିଯିବାରୁ ମଶାଙ୍କୁ ଅଣ୍ଡା ଦେବାକୁ ସୁବିଧା ହୁଏ । ମଶାମାନେ ଦିନବେଳେ ବୁଦା, ଅନ୍ଧାରୁଆ ଘରକୋଣ, ଗୁହାଳ, ପାଇଖାନା ଆଦିରେ ଲୁଚି ରହନ୍ତି ଓ ସନ୍ଧ୍ୟା ହେଲେ ବାହାରି ଆସି ଦୌରାତ୍ମ୍ୟ ଆରମ୍ଭ କରନ୍ତି । ଘରକୁ ମଶାଙ୍କ କାମୁଡ଼ୁ ରକ୍ଷା କରିବାପାଇଁ ନିମ୍ନଲିଖିତ ବ୍ୟବସ୍ଥା କରିବ ।

୧ । ରାତିରେ ଶୋଇଲାବେଳେ ମଶାରୀ ବ୍ୟବହାର କରିବ ।

୨ । ପ୍ରତି ଦୁଇ ମାସରେ ଘର, ପାଇଖାନା, ନର୍ଦ୍ଦମା ଗୁହାଳ ଓ ଆଖପାଖର ବୁଦାରେ ଡି. ଡି. ଟି. ବା ଗାମାକ୍ସିନ୍ ବା ଡାଇଏଲଡ୍ରିନ୍ ଆଦି ଛିଞ୍ଚାଇବାର ବ୍ୟବସ୍ଥା କରିବ ।

୩ । ଘର ନିକଟରେ ଥିବା ବୁଦା, ଜଙ୍ଗଲ ଆଦିକୁ କାଟି ସଫା କରିବ ।

୪ । ଘର ନିକଟରେ ଥିବା ଖାଲ ଜମିକୁ ପୋତ ଦେବ ।

୫ । ପୋଖରୀରେ ଦଳ, ଘାସ ଆଦି ହେଲେ ତାକୁ ପରିଷ୍କାର କରିଦେବ ।

୬ । ପୋଖରୀରେ ରେହି, ଏଣ୍ଡୁଳା, ଗୋଡ଼ିଶ, ଖସୁଆ କେତେଣ୍ଡି ମାଛ ଛାଡ଼ିଲେ ସେମାନେ ମଶା ଛୁଆଙ୍କୁ ଖାଇ ଯା'ନ୍ତି ।



ଭଙ୍ଗା ମାଠିଆରେ ବର୍ଷା ଜଳ ରହି
ମେଲେରିଆ ମଶାର ବଂଶବୃଦ୍ଧିରେ ସୁବିଧା କରେ ।

୭ । ବର୍ଷାଦିନେ ଟିଣ, ଫୋପଡ଼ା ହୋଇଥିବା ଜୋତା, ଶିଶି, ଭଙ୍ଗାମାଠିଆ ଇତ୍ୟାଦିରେ ଯେପରି ପାଣି ଜମି ନ ରହେ ସେଥିପ୍ରତି ଦୃଷ୍ଟି ଦେବ ।

**ମୂଷା**—ଅନେକ ଜାତିର ମୂଷା ଅଛନ୍ତି । ଆମର ବାସ ଗୃହରେ ଯେଉଁ ସବୁ ମୂଷା ଉପଦ୍ରବ କରନ୍ତି ସେମାନଙ୍କ ମଧ୍ୟରେ ଗାଲୁଆ ମୂଷା, ଚୂଟିଆ ମୂଷା ଓ ଘଉଆ ମୂଷା ପ୍ରଧାନ । ଗୃହରେ,

କାନ୍ଥରେ, ଚଟାଣରେ, ଚଢ଼ଆରେ, ବାଡ଼ ମୂଳରେ, ଧାନ ଅମାର, କାଠ ଡାବଲ, ବନ୍ଦ ବାକ୍ସ, ବ୍ୟବହାର ହେଉ ନ ଥିବା ପେଡ଼ି-ପେଟେର ଆଦିରେ ମୂଷା ବସା କରନ୍ତି । ଏମାନେ ବର୍ଷରେ ତିନି ଥରରୁ ପାଞ୍ଚଥର ଯାଏ ଛୁଆ କରନ୍ତି ଓ ଥରକେ ଛଅଟିରୁ ବାରଟି ଯାଏ ସନ୍ତାନ ଜନ୍ମ ହୁଏ । ଛୁଆ ବଢ଼ି ତିନିମାସର ହେଲେ ସେମାନେ ପୁଣି ସନ୍ତାନ ଜନ୍ମକରନ୍ତି ।

ମୂଷାମାନେ ମାଟିଘରରୁ ଚଟାଣ ଓ କାନ୍ଥ ଖୋଳି ନଷ୍ଟ କରି ପକାନ୍ତି । ସେମାନଙ୍କଯୋଗୁଁ ଅନେକ ମୂଲ୍ୟବାନ୍ ଲୁଗାପଟା ଓ କାଗଜପତ୍ର ନଷ୍ଟ ହୁଏ । ହିସାବ କରାଯାଇଅଛି ଯେ ଭାରତରେ ମୂଷାଙ୍କ ଯୋଗୁ

ଗାଭୁଆ ମୂଷା

ପ୍ରତିବର୍ଷ ଦୁଇକୋଟି ପଚିଶ ଲକ୍ଷ କିଲୋଗ୍ରାମ ଓଜନର ଶସ୍ୟ ନଷ୍ଟ ହୁଏ । ମୂଷା ଖାଆନ୍ତି ଯେତେ ନଷ୍ଟନ୍ତି ତା'ଠୁ ବେଶୀ । ମୂଷାଙ୍କ ଦେହରେ ଏକଜାତି ପୋକ ରହନ୍ତି । ସେମାନଙ୍କୁ ପ୍ଲେଗ ରୋଗ ହେଲେ ଏହି ପୋକମାନଙ୍କ ଦ୍ୱାରା ତାହା ମଣିଷଙ୍କୁ ଡିଏଁ । ମୂଷା-ମାନଙ୍କ ଉପଦ୍ରବରୁ ରକ୍ଷା ପାଇବା ପାଇଁ ନିମ୍ନଲିଖିତ ବ୍ୟବସ୍ଥା ଅବଲମ୍ବନ କରିବ ।

୧ । ମୂଷା ମାରିବାପାଇଁ ଯନ୍ତା ବସାଇବ ।

୨ । ଭାତ, ବିସ୍କୁଟ, ରୁଟି ଆଦିରେ ମୂଷାମରା ବିଷଦେଇ ମୂଷା ହେଉଥିବା ସ୍ଥାନରେ ରାତିରେ ରଖିବ । ଯେଉଁ ଦ୍ରବ୍ୟ ମୂଷା ଖାଇ

ନ ଥିବେ ସେଗୁଡ଼ିକୁ ସକାଳେ ଫଗଡ ଜଳି ନଷ୍ଟ କରିଦେବ । ମୂଷା କଷକୁ ସାବଧାନରେ ରଖିବ ଯେପରି ଗ୍ରେଟ ପିଲ ଭୁଲରେ ଖାଇ ନ ପକାନ୍ତି ।

୩ । ଅମାର, ପାଳଗଦା, ଇତ୍ୟାଦିକୁ ବାସଗୃହଠାରୁ ଦୂରରେ କଲେ ବାସଗୃହରେ ମୂଷାଙ୍କ ଉପଦ୍ରବ ଅନେକ ପରିମାଣରେ କମେ ।

୪ । ବିରାଡ଼ି ପୋଷିଲେ ମୂଷାଙ୍କ ଉତ୍ପାତ କମେ ।

ଛାରପୋକ—ଘ୍ରାରପୋକ ବା ଉଡ଼ଣ ଗୋଟିଏ କୀଟ । ଏମାନଙ୍କ ମୁହଁ ଛୁଞ୍ଚପରି ଗୋଜିଆ । ତାକୁ ଆମ ଦେହରେ ଫୁଟାଇ ଦେଇ ସେମାନେ ଆମର ରକ୍ତ ଶୋଷି ଖା'ନ୍ତି । ଖଟ, ଚୌକି, ବେଞ୍ଚ ଆଦିର ଫାଟ ଜାଗା, ଝରକା କବାଟର ଫାଙ୍କ, ଖିପ, ତକିଆ, ଗଦି, ମଶାରି କୋଣ ଇତ୍ୟାଦିରେ ଏମାନେ ଦିନବେଳେ ଲୁଚି ରହନ୍ତି ଓ ରାତି ହେଲେ କାମୁଡ଼ନ୍ତି । ଗୋଟିଏ ମାଈ ଘ୍ରାରପୋକ ଥରକେ ଦୁଇ ଶହରୁ ପାଞ୍ଚଶ ଯାଏ ଅଣ୍ଡା ଦିଏ । ପ୍ରାୟ ସାତଦିନ ପରେ ଛୁଆ ଫୁଟନ୍ତି । ମନୁଷ୍ୟର ରକ୍ତ ଏମାନଙ୍କର ଆହାର । ଅନ୍ୟୁନ ଦେଢ଼ମାସ ପରେ ବଡ଼ ହୋଇ



ଉଡ଼ଣ

ଏମାନେ ପୁଣି ଅଣ୍ଡା ଦେବାକୁ ଆରମ୍ଭ କରନ୍ତି । କେତେଚୌକି ଫାଟରେ ତୁମେ ଘ୍ରାରପୋକର ଅଣ୍ଡା ଓ ଛୁଆ ଦେଖି ପାରିବ ।

ଉଡ଼ଣ କାମୁଡ଼ାରେ ଘାଟରେ ଭଲ ନିଦ ହୁଏ ନାହିଁ, ରକ୍ତ କ୍ଷୟ ଓ ରକ୍ତ ଦୂଷିତ ହୁଏ । ଏହାଫଳରେ ନାନାରୋଗ ଦେଖାଦିଏ ।

ଦଂଶିତ ସ୍ଥାନ ଫୁଲିଯାଏ ଓ ଚର୍ମରୋଗ ହୁଏ । ସେମାନଙ୍କର ଦୌରାତ୍ମ୍ୟରୁ ରକ୍ଷା ପାଇବାପାଇଁ ନିମ୍ନଲିଖିତ ବ୍ୟବସ୍ଥା ପାଳନ କରିବ ।

୧ । ଯେଉଁ ଖଟ, ଚୌକି ଆଦିରେ ଓଡ଼ଶ ହୋଇଥିବେ ତା'ଉପରେ ବିଶେଷ କରି, ଗଣ୍ଠିମାନଙ୍କରେ ଥରକୁ ଥର ଗରମ ପାଣି ଢାଳିବ ।

୨ । ଡି. ଡି. ଟି. ବା ଗାମାକ୍ସିନ୍‌କୁ କିରୋସିନ ତେଲରେ ମିଶାଇ ଗୁରପୋକ ଥିବା ସ୍ଥାନମାନଙ୍କରେ ପକାଇବ ।

୩ । ବସ୍, ରେଲ ଆଦିରେ ଯାତାୟାତ କରି ଆସିବା ପରେ ବିଛଣା ଓ ଲୁଗାପଟାକୁ ଟାଣ ଖରାରେ ଦେଲାପରେ ବା କାଚିଲା ପରେ ବ୍ୟବହାର କରିବ ।

ଉଇ—ଉଇ ଆମର ଏକ ବଡ଼ ଶତ୍ରୁ । ଏମାନେ ଆମର ଫସଲ ଗଛମାନଙ୍କର ବହୁତ କ୍ଷତି କରନ୍ତି ସଙ୍ଗେ ସଙ୍ଗେ ଘରର ଚଉ, କରଗା, କବାଟ, ଝରକା, ଅନ୍ୟାନ୍ୟ କାଠ ଜିନିଷ, ଲୁଗାପଟା ବହିପତ୍ର ଆଦି ଖାଇ ନଷ୍ଟ କରି ଦିଅନ୍ତି । ଘର ଓ ଜିନିଷପତ୍ରକୁ ଉଇଙ୍କ ଦାଉରୁ ରକ୍ଷା କରିବା ପାଇଁ ନିମ୍ନଲିଖିତ ବ୍ୟବସ୍ଥା ଅବଲମ୍ବନ କରିବ ।

୧ । ଚଉ, କରଗା, ଖୁଣ୍ଟ, କବାଟ, ଝରକା ଇତ୍ୟାଦି ମାଟି ସହିତ ଲାଗିଥିବାରୁ ସେଥିରେ ସହଜରେ ଉଇ ଧରନ୍ତି । ସେସବୁରେ ଆଲକାତରା ବୋଳିଲେ ଉଇ ହେବେ ନାହିଁ ।

୨ । ଘର ଭିତରେ ବା ଘର ପାଖରେ ଉଇ ହୁଙ୍କା ହେଲେ ଭାଙ୍ଗିଦେବ ଓ ସେଥିରେ ଡି. ଡି. ଟି. ସହିତ କିରୋସିନ ମିଶାଇ ପକାଇବ ।

୩ । ଘର ଭିତରେ ଆଲମାରି ଓ ଅନ୍ୟାନ୍ୟ ଆସବାବ ସବୁକୁ କାନ୍ଥକୁ ଲଗାଇ ରଖିଲେ ସହଜରେ ଉଇ ଲାଗନ୍ତି । ତେଣୁ ସେସବୁ କାନ୍ଥଠାରୁ ଅନ୍ତତଃ ୧୦/୨ ସିଣ୍ଟିମିଟର ଦୂରରେ ରଖିବ । ପ୍ରତି ଛ' ମାସରେ ସେସବୁର ଗୋଡ଼ରେ ଅଲକାତରା ବା କ୍ରିଓଜୋଟ ଲଗାଇବ । ବିଶେଷତଃ ବର୍ଷା ଆଗରୁ ଥରେ ଏପରି କରିବ । ଟିଣ ବା ପଥୁରରେ ଅଲକାତରା ବା କ୍ରିଓଜୋଟ ଦେଇ ସେଥିରେ ଖଟ, ପଲଙ୍କ, ଆଲମାରି ଇତ୍ୟାଦିର ଗୋଡ଼ ଥୋଇଲେ ଉଇ ଧରନ୍ତି ନାହିଁ ।

୪ । କାନ୍ଥ ଭିତରେ ହୋଇଥିବା ଆଲମାରିରେ ବେଶୀ ଉଇ ଲାଗନ୍ତି । ଏଣୁ କାନ୍ଥ ଆଲମାରିକୁ ମଝେ ମଝେ ପରୀକ୍ଷା କରୁଥିବ ।

## ପ୍ରଶ୍ନ

୧ । କିପରି ସ୍ଥାନରେ ବାସଗୃହ ତୋଳିବ ଲେଖ ।

୨ । କି କି ନିୟମ ପାଳନ କଲେ ବାସଗୃହ ପରିଷ୍କାର ପରିଚ୍ଛନ୍ନ ରହେ ?

୩ । ବାସଗୃହରେ ସୂର୍ଯ୍ୟାଲୋକ ଓ ବାୟୁ ଚଳାଚଳ କାହିଁକି ଆବଶ୍ୟକ ? ସେଥିପାଇଁ କି କି ବ୍ୟବସ୍ଥା କରିବ ?

୪ । ଘରେ ମଶା ଓ ମାଛି ହେଉଥିଲେ କ'ଣ କରିବ ?

୫ । ଘରେ ମୂଷା ଓ ଉଇଙ୍କ ଦାଉରୁ ରକ୍ଷା ପାଇବାକୁ କି କି ବ୍ୟବସ୍ଥା ଅବଲମ୍ବନ କରିବ ?

୬ । ଛାରପୋକ କେଉଁଠି ରହେ ଓ କଅଣ ଖାଏ ? ସେମାନଙ୍କୁ କିପରି ଦୂର କରିବ ?

---

ମୁଦ୍ରାକର—ଶ୍ରୀ କେଶବ ଚରଣ ରଥ, ପ୍ରକାଶ ପ୍ରିଣ୍ଟର୍ସ, କଟକ-୧